
ଗାନ୍ଧୀ ପୁସ୍ତକମାଳା


# ହିନ୍ଦ୍ ସ୍ୱରାଜ୍ୟ



ମୋହନଦାସ କରମଚନ୍ଦ ଗାନ୍ଧୀ


ଉତ୍କଳ ଗାନ୍ଧୀ ସ୍ମାରକ ନିଧି, କଟକ-୨


ପ୍ରକାଶକ :

ରତନ ଦାସ

ସଂପାଦକ :

ଉତ୍କଳ ଗାନ୍ଧୀ ସ୍ମାରକ ନିଧି

କଟକ-୨

ମୁଦ୍ରାକର :

ଶ୍ରୀ ନିକୁଞ୍ଜ କିଶୋର ଦାସ

ଗ୍ରାମସେବକ ସମବାୟ ପ୍ରେସ,

କଟକ-୨

ନୂତନ ମୁଦ୍ରଣ-- ମାର୍ଚ୍ଚ ୧, ୧୯୭୨

ମୁଦ୍ରଣ ସଂଖ୍ୟା—୨୦୦୦

ମୂଲ୍ୟ—ଦୁଇଟଙ୍କା ପଚିଶ ପଇସା ମାତ୍ର

## ପ୍ରକାଶକ କଥା :

ଗାନ୍ଧୀ ପୁସ୍ତକମାଳାର ୫ମ ଖଣ୍ଡ "ହିନ୍ଦ୍-ସ୍ୱରାଜ୍ୟ" ପ୍ରକାଶିତ ହେବାକୁ ଯାଉଛି । ଭାରତର ମୁକ୍ତି ଆନ୍ଦୋଳନବେଳେ "ହିନ୍ଦ୍-ସ୍ୱରାଜ୍ୟ" ଦେଶ ବିଦେଶରେ ଚହଳ ପକାଇଥିଲା । ଲେଖକ ମହାତ୍ମା ଗାନ୍ଧୀ ସ୍ୱୟଂ ଏହି ପୁସ୍ତକକୁ କାହିଁରେ ବୋହି ରାସ୍ତାରେ ବୁଲି ବିକ୍ରୀ କରୁଥିଲେ ବୋଲି ଶୁଣାଯାଏ । ସେ ଏହି ବହିରେ ଥିବା ମୌଳିକ କଥା, ବୈପ୍ଳବିକ ଚିନ୍ତାଧାରା ଆଧାରରେ ଭାରତର ଜନସାଧାରଣଙ୍କୁ ସ୍ୱାଧୀନ ଭାରତର ନିର୍ମାଣ ପାଇଁ ପ୍ରସ୍ତୁତ କରିବାକୁ ଚାହିଁଥିଲେ ।

ଗାନ୍ଧୀଜୀଙ୍କର ନିଜର ଲେଖାଗୁଡ଼ିକ ମଧ୍ୟରେ ପ୍ରଥମ ଲେଖା "ହିନ୍ଦ୍-ସ୍ୱରାଜ୍ୟ" ସର୍ବପ୍ରଥମେ ପ୍ରକାଶିତ ହୋଇଥିଲା । ଏଥିରେ ସଭ୍ୟତା, ସଂସ୍କୃତି, ରାଜନୀତି, ଅର୍ଥନୀତି, ଶିକ୍ଷା ଇତ୍ୟାଦି ବିଷୟରେ ଗାନ୍ଧୀଜୀଙ୍କର ବୈପ୍ଳବିକ ଚିନ୍ତାଧାରା ଅତି ସ୍ପଷ୍ଟ ଭାବରେ ଦିଆଯାଇଛି । ଆଧ୍ୟାତ୍ମିକତାକୁ ସେ ରାଜନୀତି ସହିତ ଯୋଡ଼ିଛନ୍ତି ଏବଂ ସାଧ୍ୟ ଓ ସାଧନ ମଧ୍ୟରେ ଯେଉଁ ଅବିଚ୍ଛେଦ୍ୟ ସଂପର୍କ ରହିଛି, ଏହି ପୁସ୍ତିକାରେ ତାହା ଗାନ୍ଧୀଜୀ ଅତ୍ୟନ୍ତ ସ୍ପଷ୍ଟ ଭାବରେ ପ୍ରମାଣ କରିଛନ୍ତି ।

ଆମେ ଆଶା କରୁଛୁ ଯେ ପାଠକ-ପାଠିକା ଏହି ପୁସ୍ତିକା ଦ୍ୱାରା ଗାନ୍ଧୀଜୀଙ୍କର ମୌଳିକ ବିଚାର ସହିତ ପରିଚିତ ହୋଇ ଉପକୃତ ହେବେ ।

ରତନ ଦାସ
ସମ୍ପାଦକ
ଉତ୍କଳ ଗାନ୍ଧୀ ସ୍ମାରକ ନିଧି

ତା ୧-୩-୭୨ ରିଖ
କଟକ

# ସୂଚୀପତ୍ର

# ହିନ୍ଦ୍ ସ୍ୱରାଜ୍ୟ

## ନୂଆ ସଂସ୍କରଣର ପ୍ରସ୍ତାବନା

ମୁଁ 'ହରିଜନ' ପତ୍ରିକାରେ ଏରିଆନ୍ ପା'ଥ ( Aryan path ) ମାସିକ ପତ୍ରକାର 'ହିନ୍ଦ୍ ସ୍ୱରାଜ୍ୟ ବିଶେଷାଙ୍କ'ର ଯେଉଁ ସମାଲୋଚନା କରିଥିଲି, ତାହାର ଅନୁବାଦକୁ ହିନ୍ଦ୍ ସ୍ୱରାଜ୍ୟର ଏ ନୂଆ ସଂସ୍କରଣର ପ୍ରସ୍ତାବନା ରୂପେ ଛାପିବା ଅସମୀଚୀନ ହେବ ନାହିଁ । ଏ କଥା ଠିକ୍ ଯେ 'ହିନ୍ଦ୍ ସ୍ୱରାଜ୍ୟ'ର ପ୍ରଥମ ସଂସ୍କରଣରେ ଗାନ୍ଧୀଜୀ ଯେଉଁ ବିଚାର ବ୍ୟକ୍ତ କରିଥିଲେ, ତାଙ୍କର ସେ ବିଚାରରେ ମୂଳତଃ କୌଣସି ପରିବର୍ତ୍ତନ ଘଟିନାହିଁ । ମାତ୍ର ତାହାର ଆବଶ୍ୟକ କ୍ରମ-ବିକାଶ ନିଶ୍ଚୟ ଘଟିଛି । ମୋର ନିମ୍ନଲିଖିତ ରଚନା ସେହି କ୍ରମବିକାଶ ସମ୍ବନ୍ଧରେ ଆଲୋକପାତ କରୁଅଛି । ଏହା ଗାଂଧୀଜୀଙ୍କ ବିଚାରକୁ ଅଧିକ ସ୍ପଷ୍ଟରୂପେ ବୁଝିବାରେ ସହାୟକ ହେବ ବୋଲି ଆଶା କରାଯାଉଛି ।

ୱାର୍ଦ୍ଧା, ତା ୧୧ । ୧୨ । ୧୯୩୮

ମହାଦେବ ହରିଭାଇ ଦେସାଈ

# ଗୁରୁତ୍ୱପୂର୍ଣ୍ଣ ପ୍ରକାଶନ

ଏରାନ୍ ପା'ଥ ମାସିକ ପତ୍ରିକା ଅଳ୍ପଦିନ ହେଲା 'ହିନ୍ଦ୍ ସ୍ୱରାଜ୍ୟ ବିଶେଷାଙ୍କ' ଛାପିଛନ୍ତି । ଏ ପ୍ରକାରର ବିଶେଷାଙ୍କ ପ୍ରକାଶନର କଳ୍ପନା ଯେପରି ଅଭିନବ, ଏହାର ଛପା ଓ ସଂପାଦନ ମଧ୍ୟ ସେହିପରି ସୁନ୍ଦର ହୋଇଛି । ଭଉଣୀ ଶ୍ରୀମତୀ ସୋଫିଆ ଓ୍ୱାଡ଼ିଆଙ୍କୁ ଭଗବାନ ଅଶେଷ ସାମର୍ଥ୍ୟ ଦେଇଛନ୍ତି । ତାଙ୍କର ନିଷ୍ଠାପର ପରିଶ୍ରମ ହେତୁ ଏ ପତ୍ରିକା ପ୍ରକାଶିତ ହୋଇ ପାରିଲା । ଶ୍ରୀମତୀ ଓ୍ୱାଡ଼ିଆ ତାଙ୍କର ବହୁ ବିଦେଶୀ ମିତ୍ରଙ୍କ ପାଖକୁ 'ହିନ୍ଦ୍ ସ୍ୱରାଜ୍ୟ' ବହିରୁ ଖଣ୍ଡେ ଖଣ୍ଡେ ପଠାଇଥିଲେ । ସେମାନଙ୍କ ମଧ୍ୟରୁ ଖ୍ୟାତନାମା ବିଶିଷ୍ଟ ବ୍ୟକ୍ତିମାନଙ୍କୁ ଏ ବହି ବିଷୟରେ ସେମାନଙ୍କ ଅଭିମତ ଲେଖି ପଠାଇବା ପାଇଁ ସେ ଅନୁରୋଧ କରିଥିଲେ । ସେ ନିଜେ ମଧ୍ୟ ସେ ବହି ସମ୍ବନ୍ଧରେ ଖାସ ପ୍ରବନ୍ଧ ଲେଖି ଅଭିମତ ବ୍ୟକ୍ତ କରିଥିଲେ ଯେ ଏ ବହିରେ ଭାରତବର୍ଷର ଉଜ୍ଜ୍ୱଳ ଭବିଷ୍ୟତର ଆଶା ନିହିତ । ମାତ୍ର ୟୁରୋପରେ ବର୍ତ୍ତମାନ ଯେଉଁ ଘୋର ବିଶୃଙ୍ଖଳ ଅବସ୍ଥା ଉପୁଜିଛି, ସେ ଅବସ୍ଥାର ପ୍ରତିକାର କରିବାର ଶକ୍ତି ଯେ ଏ ବହିରେ ଅଛି, ଏ କଥାଟା ୟୁରୋପର ଚିନ୍ତାଶୀଳ ବ୍ୟକ୍ତି ଓ ଲେଖକମାନଙ୍କ ଦ୍ୱାରା ସେ ବ୍ୟକ୍ତ କରାଇବାକୁ ଚାହୁଁଥିଲେ । ସେଥିପାଇଁ ସେ ଏହି ଯୋଜନା କରିଥିଲେ । ଏହାର ପରିଣତି ଚମତ୍କାର ହେଲା । ଏହି ବିଶେଷାଙ୍କରେ ଅଧ୍ୟାପକ ସଡି· ଜି· ଡି· ଏଚ୍. କୋଲ୍· ସି· ଡିଲାଇଲ୍ ବର୍ଣ୍ଣସ୍, ଜନ୍ ମିଡ଼ଲଟନ୍ ମରୀ,

ଜେ. ଡ. ବରେସ୍‌ଫୋର୍ଡ଼, ହ୍ୟୁ ଫସେଟ୍, କ୍ଲଡ଼ହ୍ୟୁଟନ୍ ଜିରାଲଡ଼୍ ହର୍ଡ଼, ଇଗ୍ନାନ୍ ରଥବୋନ୍ ଆଦି ଖ୍ୟାତନାମା ଲେଖକଙ୍କର ରଚନା ସ୍ଥାନ ପାଇଛି । ସେମାନଙ୍କ ମଧ୍ୟରୁ ଅନେକ ଶାନ୍ତିବାଦୀ ଓ ସମାଜବାଦୀ ରୂପେ ସୁପରିଚିତ । କିନ୍ତୁ ଯେଉଁମାନେ ଶାନ୍ତିବାଦୀ ଓ ସମାଜବାଦୀ ନୁହନ୍ତି, ସେମାନଙ୍କ ରଚନା ଯଦି ଏହି ବିଶେଷାଙ୍କରେ ପ୍ରକାଶ ପାଇଥାନ୍ତା, ତେବେ ସେମାନଙ୍କର ସଂଖ୍ୟା କେତେ ହୋଇଥାନ୍ତା, ଆଶ୍ଚର୍ଯ୍ୟ ଲାଗୁଛି । ଏହି ବିଶେଷାଙ୍କରେ ପ୍ରବନ୍ଧଗୁଡ଼ିକ ଏପରି ସଜ୍ଜିତ ହୋଇଛି ଯେ ଆଗେ "ଯେଉଁ ସମାଲୋଚନା ଓ ଆପତ୍ତି ଅଭିଯୋଗଗୁଡ଼ିକ ଉଠିଛି, ପରେ ସେହିଗୁଡ଼ିକମଧ୍ୟରୁ ଅଧିକାଂଶର ଜବାବ ଦିଆଯାଇଛି ।" କିନ୍ତୁ ଏପରି ଗୋଟିଏ ବା ଯୋଡ଼ିଏ ସମାଲୋଚନା ଅଛି, ଯାହା ପ୍ରାୟ ପ୍ରତ୍ୟେକ ଲେଖକ ପଠାଇଛନ୍ତି ଏବଂ ଏଠାରେ ସେହି ବିଷୟରେ ଆଲୋଚନା କଲେ ଭଲ ହେବ । ଏପରି କେତେ କଥା ଅଛି, ଯାହାକୁ ଆମ୍ଭେ ତୁରନ୍ତ ମାନିନେବା ଭଲ ହେବ । ଅଧ୍ୟାପକ ଯୋଡ଼ ଲେଖିଛନ୍ତି ଯେ ସେ ଅଳ୍ପ ଦିନ ତଳେ ଭାରତବର୍ଷକୁ ଆସିଥିଲେ । 'ହିନ୍ଦ୍ ସ୍ୱରାଜ୍ୟ'ରେ ଯେଉଁ ବିଶ୍ୱାସ ବା ସିଦ୍ଧାନ୍ତମାନ ଦିଆଯାଇଛି, ସେଗୁଡ଼ିକ ଭାରତରେ ବିଶେଷ କିଛି ସଫଳ ହେବା ସେ ବାହାରୁ ଦେଖି ପାରିଲେ ନାହିଁ । ଏ କଥାଟି ସଂପୂର୍ଣ୍ଣ ସତ୍ୟ । ସେହିପରି ମିଷ୍ଟର କୋଲ୍ କହିଛନ୍ତି ଯେ "ମନୁଷ୍ୟ ପୂର୍ଣ୍ଣରୂପେ ବ୍ୟକ୍ତିଗତ ଅର୍ଥରେ ସ୍ୱରାଜର ଯେତେଦୂର ନିକଟବର୍ତ୍ତୀ ହେବା ସମ୍ଭବ, ଗାନ୍ଧୀଜୀ ସେତେଦୂର ନିକଟବର୍ତ୍ତୀ ହୋଇଥିଲେ ହେଁ ତାଙ୍କର ନିଜର ସନ୍ତୋଷ ଅନୁସାରେ ସେ ଆଜି ଗୋଟିଏ ସମସ୍ୟା ସମାଧାନ କରି ନାହାନ୍ତି । ସେ ସମସ୍ୟାଟି ହେଉଛି, ମଣିଷ ମଣିଷ ମଧ୍ୟରେ ବିଭେଦ ରହିଛି । ନିଜେ ଗୋଟିଏ ପ୍ରକାର ଆଚରଣ କରି

ଓ ଅନ୍ୟମାନଙ୍କୁ ସେମାନଙ୍କର ବୁଦ୍ଧି ବା ସାମର୍ଥ୍ୟ ଅନୁସାରେ ଆଚରଣ କରିବାରେ ସାହାଯ୍ୟ କରି ମିଳାମିଶି କାର୍ଯ୍ୟ କରିବାର ଆମେ ଏପରି ସର୍ତ୍ତଗୁଡ଼ିକ ବାହାର କରିବା, ଯଦ୍ୱାରା ସେହି ଭେଦଭେଦ ଦୂର ହେବ । ଏହାର ପରିଣାମ ସ୍ୱରୂପ ଆମକୁ ସେହି ଲୋକମାନଙ୍କ ସହିତ ଜଣେ ହେବାକୁ ଅର୍ଥାତ୍ ସେମାନଙ୍କ ସହିତ ମିଶି ଯିବାକୁ, ସେମାନଙ୍କ ସହିତ କାମ କରିବାକୁ ପଡ଼େ । ଏକାଧାରରେ ନିଜର ବ୍ୟକ୍ତିତ୍ୱ ବଜାୟ ରଖିବାକୁ ହୁଏ ଏବଂ ଅନ୍ୟର ବ୍ୟକ୍ତିତ୍ୱକୁ ସ୍ୱୀକାର କରି ଚାଲିବାକୁ ପଡ଼େ; ଜଣେ ଅନ୍ୟ ଜଣକୁ ସମ୍ମାନ ଦେଖାଇପାରେ, ସମାଲୋଚନା କରିପାରେ ଓ ତାଙ୍କ ସମ୍ବନ୍ଧରେ ଉଚ୍ଚ ଧାରଣା ବା ମୂଲ୍ୟାଙ୍କନ କରିପାରେ ଏବଂ ଏ ସବୁ କରିବା ଉଚିତ ଅଟେ ।" ପୁଣି ଜନ୍ ମିଡ଼ଲଟନ ମରି ଯାହା କହିଛନ୍ତି ସେ କଥା ମଧ୍ୟ ଠିକ୍ । ସେ କହିଛନ୍ତି "ଅହିଂସାକୁ ଯଦି ରାଜନୈତିକ ସ୍ତରର କେବଳ ଗୋଟିଏ କୁଶଳ ପ୍ରକ୍ରିୟା ବା ଟେକ୍‌ନିକ୍ ଭାବରେ ବ୍ୟବହାର କରାଯାଏ, ତେବେ ଅହିଂସାର ଆଶାନୁରୂପ ଫଳପ୍ରଦତା ଅତି ଶୀଘ୍ର ଶେଷ ହୋଇଯାଏ । ତାହାହେଲେ ପୁଣି ପ୍ରଶ୍ନ ଉଠିବ ଯେ ଅହିଂସା ପ୍ରକୃତରେ ଅହିଂସା ପଦବାଚ୍ୟ କି ?

କିନ୍ତୁ ଏ ସବୁ ପ୍ରକ୍ରିୟା ଏକ ଅନନ୍ତ ନିୟମ-ବିବର୍ତ୍ତନ । ସେହି ଲକ୍ଷ୍ୟ ସିଦ୍ଧି ପାଇଁ ଚେଷ୍ଟା କରିବା ସଙ୍ଗେ ସଙ୍ଗେ ମଣିଷ ଲକ୍ଷ୍ୟ-ସିଦ୍ଧିର ସାଧନକୁ ବା ପନ୍ଥାକୁ ନିର୍ଦ୍ଦୋଷ କରିବାରେ ଲାଗିଥାଏ । ଶହ ଶହ ବର୍ଷ ପୂର୍ବରୁ ବୁଦ୍ଧ ଓ ଯୀଶୁଖ୍ରୀଷ୍ଟ ପ୍ରେମ ଓ ଅହିଂସାର ମୀତଶିକ୍ଷା ଦେଇଥିଲେ । ଏ ଶହ ଶହ ବର୍ଷ ମଧ୍ୟରେ ଅଳ୍ପ କେତେଜଣ ମାତ୍ର କ୍ଷୁଦ୍ର ଓ ନିର୍ଦ୍ଦିଷ୍ଟ ସମସ୍ୟାରେ ସେ ମୀତି

ପ୍ରୟୋଗ କରିଛନ୍ତି । ଗାନ୍ଧୀଜୀଙ୍କ ସମ୍ବନ୍ଧରେ ଗୋଟିଏ କଥା ସମସ୍ତେ ସ୍ୱୀକାର କରି ପାରିଛନ୍ତି ଏବଂ ଜିରାଲ୍ଡ୍ ହର୍ଡ୍ ତାହା ଦର୍ଶାଇଛନ୍ତି । ତାହା ହେଉଛି—"ଜନ-ସମୂହ ବା ସମଗ୍ର ରାଷ୍ଟ୍ରକୁ ନେଇ ମିଷ୍ଟର ଗାନ୍ଧୀ ଏହି ପ୍ରଣାଳୀକୁ (ଅହିଂସାକୁ) ପ୍ରୟୋଗ କରିବାପାଇଁ ଚେଷ୍ଟା କରୁଛନ୍ତି । ତେଣୁ ସାରା ପୃଥିବୀ ଓ ଏ ଯୁଗ ତାହାର ଫଳାଫଳ ଜାଣିବାପାଇଁ ଉତ୍ସୁକ ।" ଏ ପରୀକ୍ଷା ଯେ କଷ୍ଟସାଧ୍ୟ, ତାହା ସ୍ପଷ୍ଟ ଜଣା ପଡ଼ୁଛି ମାତ୍ର ଗାନ୍ଧୀଜୀଙ୍କର ବିଶ୍ୱାସ ଯେ ତାହା ଅସାଧ୍ୟ ନୁହେଁ । ଭାରତବର୍ଷରେ ଏ ପରୀକ୍ଷା ୧୯୨୧ରେ ଅସମ୍ଭବ ବୋଧ ହେଲା ଓ ସେଥିପାଇଁ ତାହାକୁ ଛାଡ଼ିଦେବାକୁ ପଡ଼ିଲା । କିନ୍ତୁ ସେତେବେଳେ ଯାହା ଅସମ୍ଭବ ଥିଲା, ୧୯୩୦ରେ ତାହା ସମ୍ଭବ ହୋଇପାରିଲା । ବର୍ତ୍ତମାନ ସୁଦ୍ଧା ପ୍ରଶ୍ନ ଉଠେ 'ଅହିଂସକ ପନ୍ଥା କଅଣ ?' ସେ ଶବ୍ଦର ସଦା ସମାନ ଓ ସର୍ବସମ୍ମତ ଅର୍ଥ ଓ ତାହାର ବିଷୟବସ୍ତୁ ସ୍ଥିର କରିବାକୁ ଦୀର୍ଘ ଦିନ ଧରି ଅହିଂସାର ଅଭ୍ୟାସ କରିବାକୁ ପଡ଼ିବ । ତାହାର ଉପାୟ ହେଉଛି ଆତ୍ମଶୁଦ୍ଧି, ଆହୁରି ଅଧିକ ଆତ୍ମଶୁଦ୍ଧି । ପାଶ୍ଚାତ୍ୟ ଜଗତର ଚିନ୍ତାଶୀଳ ବ୍ୟକ୍ତିମାନେ ବରାବର ଏ କଥାଟି ପାଶୋରି ପକାନ୍ତି ଯେ ଅହିଂସାର ସବୁଠାରୁ ମୌଳିକ ଅନିବାର୍ଯ୍ୟ ସର୍ତ୍ତ ହେଉଛି ପ୍ରେମ । ଶୁଦ୍ଧ ଓ ନିସ୍ୱାର୍ଥ ପ୍ରେମ, ଦେହ ଓ ମନର ପରିପୂର୍ଣ୍ଣ ଶୁଦ୍ଧି ବିନା ଅସମ୍ଭବ ।

# କଳକବ୍ଜା ଓ ସଭ୍ୟତା ଉପରେ ଆକ୍ରମଣ

'ହିନ୍ଦ୍ ସ୍ୱରାଜ୍ୟ', ବହିର ପ୍ରଶଂସାପୂର୍ଣ୍ଣ ସମାଲୋଚନା କରି ସବୁ ଲେଖକ ଗୋଟିଏ କଥା କହିଛନ୍ତି । ତାହା ହେଉଛି, ଗାଂଧୀଜୀଙ୍କର ଯନ୍ତ୍ର-ବିରୋଧ । ସମାଲୋଚକମାନଙ୍କର ଦୃଷ୍ଟିରେ ଏ ବିରୋଧ ଅପରୀଚୀନ ଓ ଅକାରଣ । ମିଡ଼୍‌ଲ୍‌ଟନ୍ ମରି କହିଛନ୍ତି— "ଗାନ୍ଧୀଜୀ ନିଜ ବିଶ୍ୱରର ଖିଲ୍ପତ.ରେ ଏ କଥାଟା ପାଶୋରି ପକାଇଛନ୍ତି ଯେ ଯେଉଁ ଅରଟ ତାଙ୍କର ଅତି ପ୍ରିୟ, ସେହି ଅରଟ ମଧ୍ୟ ଗୋଟିଏ ଯନ୍ତ୍ର ଏବଂ ତାହାକୁ ପ୍ରକୃତି ତିଆରି କରିନାହିଁ; ସେଇଟା ମଣିଷ ହାତରେ ତିଆରି ଗୋଟିଏ ଅପ୍ରାକୃତିକ ଜିନିଷ । ତେଣୁ ଗାଂଧୀଜୀଙ୍କ ସିଦ୍ଧାନ୍ତ ଅନୁସାରେ ଏ ଅରଟର ବ୍ୟବହାରକୁ ମଧ୍ୟ ଛାଡ଼ିବାକୁ ପଡ଼ିବ ।" ଅଧ୍ୟାପକ ଡଲାଇଲ୍ ବର୍ଣ୍ଣସ୍ କହିଛନ୍ତି—"ଏହା ଗୋଟିଏ ମୌଳିକ ବିଶ୍ୱର ଦୋଷ । ସେଥିରେ ପ୍ରଚ୍ଛନ୍ନ ଭାବରେ ଏହାହିଁ କୁହାଯାଇଛି ଯେ ଯେଉଁ ଯନ୍ତ୍ରର କୌଣସି ଦୁରୁପଯୋଗ ହେବାର ସମ୍ଭାବନା ଅଛି, ତାକୁ ନୈତିକ ଦୃଷ୍ଟିରୁ ଅନିଷ୍ଟକାରୀ ମନେ କରିବା ଉଚିତ । ମାତ୍ର ଅରଟ ମଧ୍ୟ ଗୋଟିଏ ଯନ୍ତ୍ର ଏବଂ ନାକ ଉପରେ ଥିବା ଚଷମା ମଧ୍ୟ ଆଖିକୁ ସାହାଯ୍ୟ କରୁଥିବା ଯନ୍ତ୍ର । ଲଙ୍ଗଳ ମଧ୍ୟ ଗୋଟିଏ ଯନ୍ତ୍ର । ପୁଣି ପାଣି କାଢ଼ିବା ପାଇଁ ଅତି ପୁରୁଣା ଯନ୍ତ୍ରଗୁଡ଼ାକ ମଧ୍ୟ ମାନବ ଜୀବନକୁ ସୁଖୀ କରିବା ପାଇଁ ତାହାର ହଜାର ହଜାର ବର୍ଷର ସତତ ଉଦ୍ୟମର ଫଳ ।… …ଯେ

କୌଣସି ଯନ୍ତ୍ରର ଦୁରୂପଯୋଗ ହେବାର ସମ୍ଭାବନା ରହିଛି । ମାତ୍ର ସେହି ଅନୈତିକତା ପାଇଁ ଯନ୍ତ୍ର ଦାୟୀ ନୁହେଁ । "ସେହି ଯନ୍ତ୍ରକୁ ବ୍ୟବହାର କରୁଥିବା ମଣିଷ ହିଁ ସେହି ଅନୈତିକତା ପାଇଁ ଦାୟୀ ।" ମୋତେ ନିଶ୍ଚୟ ସ୍ୱୀକାର କରିବାକୁ ପଡ଼ିବ ଯେ ଗାଂଧୀଜୀ 'ଶୟତାନର ଉଦ୍ଭାବନ' ଯନ୍ତ୍ର ସମ୍ବନ୍ଧରେ ଅମାର୍ଜିତ ଭାଷା ବ୍ୟବହାର କରିଛନ୍ତି ଏବଂ ଆଜି ଯଦି ସେ ଉକ୍ତ ବହିକୁ ଯତ୍ନ ସହକାରେ ପଢ଼ନ୍ତେ ଓ ସଂଶୋଧନ କରି ବସନ୍ତେ, ତେବେ ସେ ନିଜେ ସେହି ଭାଷାକୁ ବଦଳାଇ ଦିଅନ୍ତେ । କାରଣ, ମୋର ବିଶ୍ୱାସ, ଉପର୍ଯ୍ୟୁକ୍ତ ସମାଲୋଚକମାନେ ଯାହା କହିଛନ୍ତି, ଗାଂଧୀଜୀ ମୋର ସେହି ଉଦ୍ଧୃତ କଥାଗୁଡ଼ିକୁ ଗ୍ରହଣ କରି ନିଅନ୍ତେ ଏବଂ ନ୍ୟାୟ ବା ଅନ୍ୟାୟ କରିବାର ଯେଉଁ ନୈତିକ ଗୁଣ ଯନ୍ତ୍ରକୁ ବ୍ୟବହାର କରୁଥିବା ଲୋକଙ୍କଠାରେ ଅଛି, ସେହି ଗୁଣ ଯନ୍ତ୍ରଠାରେ ଅଛି ବୋଲି ସେ କେବେହେଲେ ବିଚାରି ନାହାନ୍ତି । ଉଦାହରଣ ସ୍ୱରୂପ, ୧୯୨୪ ମସିହାରେ ଥରେ କଥାବାର୍ତ୍ତା ହେଲାବେଳେ ସେ ଯାହା କହିଥିଲେ, ତାହା ପୂର୍ବୋକ୍ତ ଦୁଇ ଲେଖକଙ୍କର ମନ୍ତବ୍ୟକୁ ସ୍ମରଣ କରାଇ ଦେଉଛି । ସେ ସମୟରେ ଦିଲ୍ଲୀରେ ଥରେ ଯେଉଁ ଆଲୋଚନା ହୋଇଥିଲା, ତାହା ମୁଁ ଏଠାରେ ଉଦ୍ଧାର କରୁଅଛି ।

"ଆପଣ କଅଣ ସବୁ ଯନ୍ତ୍ରର ବିରୋଧୀ ?" ରାମଚନ୍ଦ୍ରନ୍ ସରଳ ଭାବରେ ପଚାରିଲେ ।

ଗାଂଧୀଜୀ ମୃଦୁକ ହସା ଦେଇ କହିଲେ—"ମୁଁ ଯେତେବେଳେ ଜାଣିଛି ଯେ ଏ ଦେହଟା ମଧ୍ୟ ଗୋଟିଏ ସୂକ୍ଷ୍ମ ଯନ୍ତ୍ର, ସେପରି ସ୍ଥଳେ ମୁଁ କିପରି ସବୁ ଯନ୍ତ୍ରର ବିରୋଧୀ ହୋଇପାରିବି ?

ଅରଟ ମଧ୍ୟ ଗୋଟିଏ ଯନ୍ତ୍ର । ସ୍ଲେଟିଆ ଦାନ୍ତ-ଖୁଣ୍ଟାଟି ମଧ୍ୟ ଗୋଟିଏ ଯନ୍ତ୍ର । ମୁଁ ଯନ୍ତ୍ରର ବିରୋଧ କରୁନାହିଁ । ମାତ୍ର ଲୋକଙ୍କ ମଧ୍ୟରେ ଯନ୍ତ୍ର ପାଇଁ ଯେଉଁ ଅତିମାତ୍ରାରେ ଆଗ୍ରହ ବା ପାଗଳାମୀ ରହିଛି, ମୁଁ ତାହାର ବିରୋଧୀ । ଯାହାକୁ ଲୋକେ 'ପରିଶ୍ରମରୁ ରକ୍ଷା କରୁଥିବା ଯନ୍ତ୍ର' କହନ୍ତି, ସେ ଯନ୍ତ୍ର ପାଇଁ ତ ମଣିଷ ବାୟା ହୋଇ ଯାଉଛି । ସେଗୁଡ଼ିକଦ୍ୱାରା ଲୋକଙ୍କର 'ଖଟଣି କମୁଛି' ସତ୍ୟ, ମାତ୍ର ହଜାର ହଜାର ଲୋକ କାମ ନ ପାଇ ଭୋକ ଉପାସରେ ବାଟଘାଟରେ ପଡ଼ି ମରୁଛନ୍ତି । ସମୟ ଓ ଶ୍ରମ କିପରି କମ୍ ଖର୍ଚ୍ଚ ହେବ, ତାହା ମୁଁ ମଧ୍ୟ ଚାହୁଁଛି । କିନ୍ତୁ ମୁଁ ତାହା ଅଳ୍ପ କେତେକ ଲୋକଙ୍କ ପାଇଁ ନ ଚାହିଁ, ସମୁଦାୟ ମାନବ ଜାତି ପାଇଁ ଚାହୁଁଛି । କେତେକ ମୁଷ୍ଟିମେୟ ଲୋକଙ୍କ ପାଖରେ ସମ୍ପତ୍ତି ଠୁଳ ହୋଇ ରହିବା ମୁଁ ଚାହେଁ ନାହିଁ । ମୁଁ ଚାହେଁ ଯେ ସମ୍ପତ୍ତି ସମସ୍ତଙ୍କ ପାଖରେ ଜମା ହେଉ । ଆଜି ତ ଏ ଯନ୍ତ୍ର ଅଳ୍ପ କେତେ ଲୋକଙ୍କୁ କୋଟି କୋଟି ଲୋକଙ୍କ କାନ୍ଧରେ ସବାର ହେବାପାଇଁ ସାହାଯ୍ୟ କରୁଛି । ଲୋକଙ୍କୁ ପରିଶ୍ରମରୁ ରକ୍ଷା କରିବାର ପରୋପକାର ପ୍ରେରଣା ଏ ସବୁ ପଛରେ ନାହିଁ ମାତ୍ର ଧନ-ସଂଗ୍ରହର ପ୍ରବଳ ଲୋଭ ରହିଛି । ଆଜିର ଏ ପ୍ରଚଳିତ ବୈଷୟିକ ବା ଅର୍ଥନୈତିକ ବ୍ୟବସ୍ଥା ବିରୋଧରେ ମୁଁ ମୋର ସବୁ ଶକ୍ତି ଖଟାଇ ଲଢ଼ୁଛି ।"

ରାମଚନ୍ଦ୍ରନ୍ ବ୍ୟଗ୍ର ହୋଇ ପଚାରିଲେ—"ତାହା ହେଲେ ବାପୁଜୀ ! ଆପଣ ଯନ୍ତ୍ର ବିରୋଧରେ ଲଢ଼ୁ ନାହାନ୍ତି । ଆଜିକାଲି ଯନ୍ତ୍ରର ଯେଉଁ ଦୁରୁପଯୋଗ ହେଉଛି, ଆପଣ ତାହାର ବିରୋଧ କରୁଛନ୍ତି ?" ଗାନ୍ଧୀଜୀ—ଠିକଏ ହେଲେ ଦ୍ୱିଧା ନ କରି ମୁଁ ହଁ କହିବି । କିନ୍ତୁ ମୁଁ ତାହା ସହିତ ଏତିକ ଯୋଗ କରିବି ଯେ ଯନ୍ତ୍ର

ଓ ବିଜ୍ଞାନ କ୍ଷେତ୍ରରେ ଯେଉଁ ନୂଆ ନୂଆ ଆବିଷ୍କାର ହେଉଛି, ସେଗୁଡ଼ିକ ମନୁଷ୍ୟର ଲୋଭ ଚରିତାର୍ଥ କରିବାର ସାଧନ ହେବା ଉଚିତ ନୁହେଁ । ତାହାହେଲେ ଶ୍ରମିକମାନଙ୍କୁ ସେମାନଙ୍କ ଶକ୍ତିର ଅତିରିକ୍ତ ପରିଶ୍ରମ କରିବାକୁ ପଡ଼ିବ ନାହିଁ ଏବଂ ଯନ୍ତ୍ରଗୁଡ଼ିକ ବାଧକ ହେବା ପରିବର୍ତ୍ତେ ସାଧକ ହୋଇଯିବ । ସବୁ ଯନ୍ତ୍ରକୁ ଧ୍ୱଂସ କରିବା ମୋର ଉଦ୍ଦେଶ୍ୟ ନୁହେଁ । ମୁଁ କେବଳ ସେଗୁଡ଼ିକର ସୀମା ନିର୍ଦ୍ଦିଷ୍ଟ କରିଦେବାକୁ ଚାହେଁ ।

ରାମଚନ୍ଦ୍ରନ୍—'ଏହି ଯୁକ୍ତିକୁ ଆହୁରି ଆଗେଇ ନେଲେ ଏହାର ଅର୍ଥ ହେବ ଯେ ବାଷ୍ପ ବା ବିଦ୍ୟୁତ୍ ଶକ୍ତିରେ ଚାଲୁଥିବା ବଡ଼ ବଡ଼ ଜଟିଳ ଯନ୍ତ୍ରଗୁଡିକ ଆମର ରଖିବା ଉଚିତ ନୁହେଁ ।'

ଗାନ୍ଧୀଜୀ ସେ କଥାକୁ ସମର୍ଥନ କରି କହିଲେ—'ସେପରି ଯନ୍ତ୍ରକୁ ତ୍ୟାଗ କରିବାକୁ ପଡ଼ିଲେ ପଡୁ । କିନ୍ତୁ ଗୋଟିଏ କଥା ମୁଁ ସ୍ପଷ୍ଟ କରିଦେବାକୁ ଚାହେଁ । ଆମେ ଯାହା କରିବା, ତହିଁରେ ମୂଳ ବିଚାର ହେବ ମନୁଷ୍ୟର କଲ୍ୟାଣ । ଯେଉଁ ଯନ୍ତ୍ର ଯୋଗୁଁ କାମ ନ ପାଇ ମନୁଷ୍ୟର ଅଙ୍ଗ-ପ୍ରତ୍ୟଙ୍ଗ ଜଡ଼ ଓ ନିକମା ହୋଇଯାଏ, ସେ ପ୍ରକାର ଯନ୍ତ୍ର ଆଦୌ ଲୋଡ଼ା ନାହିଁ । ସେଥିପାଇଁ ସବୁ ଯନ୍ତ୍ରକୁ ପରଖିବାକୁ ହେବ । ଉଦାହରଣ ସ୍ୱରୂପ, ସିଂଗରଙ୍କ ସିଲେଇ କଳକୁ ମୁଁ ସ୍ୱାଗତ କରିବି । ଆଜିଯାଏ ଯେତେ ଯନ୍ତ୍ର ଉଦ୍ଭାବିତ ହୋଇଛି, ତନ୍ମଧ୍ୟରୁ ଯେଉଁ ଅଳ୍ପ କେତୋଟି ଯନ୍ତ୍ର ଦରକାରୀ, ସେଥି ମଧ୍ୟରୁ ସିଂଗରଙ୍କ ସିଲେଇ କଳ ଗୋଟିଏ । ସେହି ଉଦ୍ଭାବନ ପଛରେ ଏକ ରୋମାଞ୍ଚକର ଇତିହାସ ଅଛି । ସିଂଗର ତାଙ୍କ ସ୍ତ୍ରୀଙ୍କୁ ମନଇଚ୍ଛା ସିଲେଇ କାମ କରୁଥିବା

ଦେଖିଲେ । ନିଜ ସ୍ତ୍ରୀଙ୍କ ପ୍ରତି ତାଙ୍କର ପ୍ରେମ ହିଁ ଏ ଅନାବଶ୍ୟକ ପରିଶ୍ରମରୁ ସ୍ତ୍ରୀଙ୍କୁ ରକ୍ଷା କରିବା ପାଇଁ ଏପରି ସିଲେଇ କଳ ତିଆରି କରିବା ପାଇଁ ପ୍ରେରଣା ଦେଲା । ଏହି ଉଦ୍ଭାବନ କରି ସେ କେବଳ ତାଙ୍କ ସ୍ତ୍ରୀଙ୍କୁ ବିରକ୍ତିକର ଅଯଥା ପରିଶ୍ରମରୁ ଅବ୍ୟାହତି ଦେଲେ ନାହିଁ, ଅଧିକନ୍ତୁ ଯେଉଁମାନେ ସେହି ମେସିନ୍ କିଣି ପାରିଲେ, ସେ ସମସ୍ତଙ୍କୁ ହାତରେ ଛୁଞ୍ଚି ଧରି ମଜଜଲୁଗା ସିଲେଇ କାମରୁ ମୁକ୍ତି ଦେଲେ ।'

ରାମଚନ୍ଦ୍ରନ୍ କହିଲେ--'କିନ୍ତୁ ଏହି ସିଙ୍ଗର ସିଲେଇ କଳ ତିଆରି କରିବା ପାଇଁ ତ ପୁଣି ବଡ଼ କାରଖାନା ଦରକାର ଏବଂ ସେଥିପାଇଁ ବାଷ୍ପ ବା ବିଦ୍ୟୁତ୍ ଶକ୍ତିରେ ଚାଲୁଥିବା ଯନ୍ତ୍ର ବ୍ୟବହାର କରିବା ଦରକାର ହେବ ।'

କେବଳ ଅଧିକ ଜାଣିବା ଇଚ୍ଛାରେ ରାମଚନ୍ଦ୍ରନ୍ ଏ ବାଦାନୁବାଦ ଚଳାଇଥାନ୍ତି । ଗାଂଧୀଜୀ ଅଳ୍ପ ହସି କହିଲେ—"ହଁ, କିନ୍ତୁ ମୁଁ ମଧ୍ୟ ସେ ବାବଦରେ ସେହି ପରିମାଣରେ ସମାଜବାଦୀ । ସେଥିପାଇଁ ମୁଁ କହିବି ଯେ ରାଷ୍ଟ୍ର ବା ସରକାରର ଏପରି କଳକାରଖାନାଗୁଡ଼ିକର ମାଲିକ ହେବ କିମ୍ବା ଜନତାର ସରକାରଙ୍କଦ୍ୱାରା ଏପ୍ରକାର କାରଖାନାଗୁଡ଼ିକ ପରିଚାଳିତ ହେବ । କେହି ଏ କାରଖାନାଗୁଡ଼ିକ କେବଳ ଲାଭପାଇଁ ଚଳାଇବ ନାହିଁ, ଲୋକଙ୍କର ମଙ୍ଗଳ ପାଇଁ ଏଗୁଡ଼ିକ କାମ କରିବ । ଲୋଭ ପରିବର୍ତ୍ତେ ଲୋକମାନଙ୍କ ମଧ୍ୟରେ ସ୍ନେହସଦ୍ଭାବ ହିଁ ଏ କାରଖାନା-ଗୁଡ଼ିକର ମୂଳ ଉଦ୍ଦେଶ୍ୟ ହେବ । ମୁଁ ଶ୍ରମିକମାନଙ୍କ ଅବସ୍ଥା ସୁଧାରିବାକୁ ଚାହେଁ । ପଇସା ପଛରେ ଯେ ଲୋକେ ପାଗଳ

ହୋଇ ଯାଉଛନ୍ତି, ସେ ଚାଗଳାମୀ ବନ୍ଦ ହେବା ଦରକାର । ଶ୍ରମିକମାନଙ୍କୁ କେବଳ ଉଚିତ ମଜୁରି ମିଳିଗଲେ ଯଥେଷ୍ଟ ହେବ ନାହିଁ । ସେମାନଙ୍କର ଯେତିକ କାମ କରିବାର ଶକ୍ତି ଅଛି, ସେତିକ କାମ ସେମାନଙ୍କୁ ମିଳିବା ଦରକାର । ଏହା ହୋଇ ପାରିଲେ ଏ କଳ କାରଖାନା ଦ୍ୱାରା ସେଗୁଡ଼ିକର ମାଲିକମାନେ ଯେତିକ ଲାଭବାନ୍ ହେବେ, ସେଥି କାରଖାନାରେ ଖଟୁଥିବା ଶ୍ରମିକମାନେ ମଧ୍ୟ ସେତିକ ଲାଭବାନ୍ ହେବେ । ଯନ୍ତ୍ର ଓ କଳକାରଖାନା ସମ୍ପର୍କରେ ମୋ କଳ୍ପନାରେ ଯେଉଁ ବୈଶିଷ୍ଟ୍ୟ ରହିଛି, ତନ୍ମଧ୍ୟରୁ ଗୋଟିଏ ଖବର ହେଉଛି ଯେ ସିଙ୍ଗରଙ୍କ ସିଲେଇ କଳ ନିର୍ମାଣ ପଛରେ ପ୍ରେମ ଥିଲା, ସେଥିପାଇଁ ତଦ୍ୱାରା ମନୁଷ୍ୟର ସୁଖ ବଢ଼ାଇବାର ଖବର ଥିଲା ମୁଖ୍ୟ । ମନୁଷ୍ୟର ଶ୍ରମର ଲାଘବ କରିବା ଆମର ଉଦ୍ଦେଶ୍ୟ ହେବା ଉଚିତ । ଧନ-ଲୋଭ ଉଦ୍ଦେଶ୍ୟ ହେବା ଅନୁଚିତ । ଉପରନ୍ତୁ, ସେଥିରେ ଦୟାଭାବନା ରହିବା ଉଚିତ । ଉଦାହରଣ ସ୍ୱରୂପ, ଟାକୁଡ଼ି ସିଧା କରିବା ଯନ୍ତ୍ରକୁ ମୁଁ ସ୍ୱାଗତ କରିବି । ମୁଁ ଚାହେଁନା ଯେ କମାରର ଟାକୁଡ଼ି ତିଆରି କାମ ବନ୍ଦ ହୋଇଯାଉ । ମାତ୍ର ମୋର ଇଚ୍ଛା, ଟାକୁଡ଼ି ବଙ୍କା ହୋଇଗଲେ, ସିଧା କରିବା ପାଇଁ ପ୍ରତ୍ୟେକ କଟାଳୀ ପାଖରେ ଟାକୁଡ଼ି ସିଧା କରିବାର ଯନ୍ତ୍ର ରହୁ । ତେଣୁ ଲୋଭ ବଦଳରେ ପ୍ରେମକୁ ପ୍ରତିଷ୍ଠା କର । ତାହା ହେଲେ, ସବୁ ସୁଧୁରିଯିବ ।”

ରାମଚନ୍ଦ୍ରନ୍—କିନ୍ତୁ ଆପଣ ସିଲେଇ କଳ ଓ ଟାକୁଡ଼ିକୁ ଗ୍ରହଣ କରି ଯନ୍ତ୍ରକୁ ବିରୋଧ କରିବା ବାବଦରେ ଯେଉଁ ବ୍ୟତିକ୍ରମ ଦର୍ଶାଇଲେ, ସେ ବ୍ୟତିକ୍ରମର ସୀମା କେତେ ଦୂର ?

ଗାଂଧୀଜୀ—ଏହି ଯନ୍ତ୍ରଗୁଡ଼ିକ ମଣିଷକୁ ସାହାଯ୍ୟ କରିବା ପରିବର୍ତ୍ତେ ତାହାର ବ୍ୟକ୍ତିତ୍ୱକୁ ବ୍ୟାହତ କରିବା ମାତ୍ରେ ତାହା ନଜର ସୀମା ଲଙ୍ଘନ କରେ । ଏ ଯନ୍ତ୍ରଗୁଡ଼ିକୁ ମଣିଷର ହାତଗୋଡ଼ ଅଚଳ କରିଦେବାର ସୁଯୋଗ ଦିଆଯିବ ନାହିଁ ।

ରାମଚନ୍ଦ୍ରନ୍--ତାହାହେଲେ ସିଦ୍ଧାନ୍ତ ଦୃଷ୍ଟିରୁ ଆପଣ ସବୁ କଳ-କାରଖାନାକୁ ନାମଞ୍ଜୁର କରି ନାହାନ୍ତି । ଆପଣ ସିଲେଇ କଳକୁ ମଞ୍ଜୁର କରୁଛନ୍ତି । ତେଣୁ ସାଇକଲ, ମୋଟରକାର ଆଦି ସମ୍ବନ୍ଧରେ ମଧ୍ୟ ସେହି ମତ ଦେବେ ।

ଗାଂଧୀଜୀ—ମୁଁ ତାହା କରିବି ନାହିଁ । କାରଣ, ସେଗୁଡ଼ିକ ମଣିଷର ପ୍ରାଥମିକ ଆବଶ୍ୟକତାଗୁଡ଼ିକ ମଧ୍ୟରୁ କୌଣସି ଆବଶ୍ୟକତା ପୂରଣ କରୁ ନାହିଁ । ମୋଟରକାର ସାହାଯ୍ୟରେ ଦ୍ରୁତଗତିରେ ଦୂରତା ଅତିକ୍ରମ କରିବା ମଣିଷର ପ୍ରାଥମିକ ଆବଶ୍ୟକତା ନୁହେଁ । ବରଂ ଛୁଞ୍ଚି ମଣିଷ ଜୀବନରେ ଗୋଟିଏ ଅତ୍ୟାବଶ୍ୟକ ବସ୍ତୁ । ତେଣୁ ତାହା ପ୍ରାଥମିକ ଆବଶ୍ୟକତା ମଧ୍ୟରେ ଗଣ୍ୟ ହୋଇପାରିବ । ମାତ୍ର ସିଦ୍ଧାନ୍ତ ଦୃଷ୍ଟିରୁ ମୋର ଏ ଦେହ ଯଦି ମୋର ମୁକ୍ତିର ସହାୟକ ନ ହୁଏ ବା ଆତ୍ମଜ୍ଞାନ ପ୍ରାପ୍ତିରେ ସାହାଯ୍ୟ ନ କରେ, ତେବେ ମୁଁ ଯେପରି ଏ ଦେହକୁ ପରିତ୍ୟାଗ କରିପାରେ, ସେହି ଦୃଷ୍ଟିକୋଣରୁ ମୁଁ ସବୁ କଳକାରଖାନାକୁ ମଧ୍ୟ ନାମଞ୍ଜୁର କରି ଦେଇପାରେ । ମାତ୍ର ଏ ଦେହ ପରି କଳକାରଖାନାଗୁଡ଼ିକ ମଧ୍ୟ ରହିବା ଅବଶ୍ୟମ୍ଭାବୀ । ମୁଁ ଆପଣଙ୍କୁ କହୁଛି ଯେ ଦେହଟା ଗୋଟିଏ ଉଚ୍ଚ ଧରଣର ଯନ୍ତ୍ର କିନ୍ତୁ ଆତ୍ମାର ପୂର୍ଣ୍ଣ ବିକାଶରେ ଯଦି ଦେହ ବାଧକ ହେବ, ତେବେ ସେ ଦେହକୁ ମଧ୍ୟ ତ୍ୟାଗ କରିବାକୁ ପଡ଼ିବ ।

ଉପର୍ଯ୍ୟୁକ୍ତ କଥୋପକଥନରେ ଗାଂଧୀଜୀ ଯାହା କହିଛନ୍ତି, ତାହା ସହିତ ସିଦ୍ଧାନ୍ତ ଦୃଷ୍ଟିରୁ ସମାଲୋଚକମାନଙ୍କ ମଧ୍ୟରୁ କାହାରି ମତଭେଦ ହେବ ବୋଲି ମୋର ମନେ ହେଉନାହିଁ । ଦେହପରି ଯନ୍ତ୍ର ମଧ୍ୟ ଆମର ବିକାଶ ସାଧନରେ ଯେଉଁ ପରିମାଣରେ ସହାୟକ ହୋଇଥାଏ, ସେହି ପରିମାଣରେ ତାହା ମଣିଷ ପାଇଁ ଉପଯୋଗୀ ହୁଏ ।

ପାଶ୍ଚାତ୍ୟ ସଭ୍ୟତା ସମ୍ବନ୍ଧରେ ମଧ୍ୟ ଏହା ପ୍ରଯୁଜ୍ୟ । 'ପାଶ୍ଚାତ୍ୟ ସଭ୍ୟତା ମାନବ ଆତ୍ମାର ମହାଶତ୍ରୁ' ଏହି ଉକ୍ତିର ବିରୋଧ କରି ମିଷ୍ଟର କୋଲ୍ ଲେଖିଛନ୍ତି—'ପ୍ରେମ ଓ ଆଡମିନଆର ବିଭୀଷିକା, ଆମ ମୁଣ୍ଡ ଉପରେ ସବୁବେଳେ ଝୁଲି ରହିଥିବା ଭୟ, ସୁଖ ସମୃଦ୍ଧିର ସମ୍ଭାବ୍ୟ ପ୍ରାଚୁର୍ଯ୍ୟ ସତ୍ତ୍ୱେ କୋଟି କୋଟି ଲୋକ ଅନ୍ନ-ବସ୍ତ୍ରାଦି ପ୍ରାଥମିକ ଆବଶ୍ୟକତାର ଅଭାବ ଭୋଗୁଥିବା, ଏଗୁଡ଼ିକ ଯେ ପାଶ୍ଚାତ୍ୟ ସଭ୍ୟତାର ଦୋଷ, ଗୁରୁତର ଦୋଷ, ତାହା ମୁଁ ମାନୁଛି । କିନ୍ତୁ ଏଗୁଡ଼ିକ ସେ ସଭ୍ୟତାର ଅନ୍ତର୍ନିହିତ ସ୍ୱଧର୍ମ ବା ମୂଳତତ୍ତ୍ୱ ନୁହେଁ । ...... । ଆମେ ଆମର ଏ ସଭ୍ୟତାକୁ ସୁଧାରିବୁ ବୋଲି ମୁଁ କହୁନାହିଁ । କିନ୍ତୁ ଏ ସଭ୍ୟତାକୁ ସୁଧାରି ହେବ ନାହିଁ ବୋଲି ମୁଁ ବିଶ୍ୱାସ କରେ ନାହିଁ । ମନୁଷ୍ୟର ଆତ୍ମା ପାଇଁ ଯାହା ଆବଶ୍ୟକ, ସେଗୁଡ଼ିକୁ ଅସ୍ୱୀକାର କରିବା ଉପରେ ଏ ସଭ୍ୟତା ପ୍ରତିଷ୍ଠିତ ବୋଲି ମୁଁ ବିଶ୍ୱାସ କରେ ନାହିଁ ।" ଏ ଯୁକ୍ତି ଠିକ୍ ଅଟେ । ଗାଂଧୀଜୀ ପାଶ୍ଚାତ୍ୟ ସଭ୍ୟତାର ଯେଉଁ ଦୋଷ ଦେଖାଇଛନ୍ତି, ସେଗୁଡ଼ିକ ସେ ସଭ୍ୟତାର ଅନ୍ତର୍ନିହିତ ସ୍ୱଧର୍ମ ବା ମୂଳତତ୍ତ୍ୱ ନୁହେଁ, ମାତ୍ର ସେହି ସଭ୍ୟତାର ଗତିର ବା ଆଭିମୁଖ୍ୟର ତ୍ରୁଟି । ଏହି

ଭାରତୀୟ ସଭ୍ୟତାର ଓ ପାଶ୍ଚାତ୍ୟ ସଭ୍ୟତାର ଆଭିମୁଖ୍ୟ ମଧ୍ୟରେ ଯେଉଁ ପାର୍ଥକ୍ୟ ରହିଛି, ତାହା ଏ ବହିରେ ଦର୍ଶାଇବା ଗାନ୍ଧୀଜୀଙ୍କର ଉଦ୍ଦେଶ୍ୟ ଥିଲା । ପାଶ୍ଚାତ୍ୟ ସଭ୍ୟତାକୁ ସୁଧାରିବା ଯେ ଅସମ୍ଭବ କାର୍ଯ୍ୟ ନୁହେଁ, ଏ ବିଷୟରେ ଗାନ୍ଧୀଜୀ ଜି. ଡି. ଏଚ୍. କୋଲ୍‌ଙ୍କ ସହିତ ଏକମତ ହେବେ । ସେ କଥା ମଧ୍ୟ ସ୍ୱୀକାର କରିବେ ଯେ ପାଶ୍ଚାତ୍ୟ ଦେଶମାନଙ୍କ ପାଇଁ ପାଶ୍ଚାତ୍ୟ ଢଙ୍ଗର "ହୋମ୍ ରୁଲ୍" ଲୋଡ଼ା ଏବଂ ସେହି ହୋମ୍‌ରୁଲ୍‌ର କଳ୍ପନା ଗାନ୍ଧୀ ଭଳି ଆତ୍ମନିଗ୍ରହକାଙ୍କ୍ଷୀ ବ୍ୟକ୍ତିମାନେ କରିବେ । ମାତ୍ର ସେହିମାନେ ଗାନ୍ଧୀଜୀଙ୍କର କଳ୍ପିତ ଭାରତବର୍ଷର ଅନୁରୂପ ନ ହୋଇ ଆମର ପାଶ୍ଚାତ୍ୟ ଢଙ୍ଗର ହୋଇଥିବେ ।

# ସିଦ୍ଧାଂତର ସୀମା

ଅଧ୍ୟାପକ କୋଲ୍ ନିମ୍ନଲିଖିତ ସମସ୍ୟା ଉତ୍ଥାପନ କରିଛନ୍ତି—

ଯେତେବେଳେ ଜର୍ମାନୀ ଓ ଇଟାଲୀର ଉଡ଼ାଜାହାଜ-ଚାଳକ ସ୍ପେନର ଅଧିବାସୀଙ୍କୁ ସଂହାର କରିଛନ୍ତି, ଜାପାନୀ ଉଡ଼ାଜାହାଜ-ଚାଳକମାନେ ଚୀନର ସହରଗୁଡ଼ିକରେ ହଜାର ହଜାର ଲୋକଙ୍କୁ ହତ୍ୟା କରୁଛନ୍ତି, ଜର୍ମାନ ସେନାବାହିନୀ ଅଷ୍ଟ୍ରିଆରେ ପଶିଛନ୍ତି ଓ ଚେକୋସ୍ଲୋଭାକିଆରେ ପଶିବାପାଇଁ ଧମକ ଦେଉଛନ୍ତି, ଆବିସିନିଆ ଉପରେ ବୋମା ବୃଷ୍ଟି କରି ସେଠାରେ ରକ୍ତନଦୀ ବୁହାଇ ତାକୁ ଇଟାଲୀ ଦଖଲ କରିସାରିଲାଣି, ସେତେବେଳେ ଏ ଅହିଂସାର ସିଦ୍ଧାନ୍ତ ତିଷ୍ଠି ପାରିବ କି ? ପ୍ରାୟ ଦୁଇ ବର୍ଷ ପୂର୍ବେ ମୁଁ ଯେ କୌଣସି ପରିସ୍ଥିତିରେ ଯୁଦ୍ଧ ଓ ସଂହାରକ ହିଂସାର ବିରୋଧ କରୁଥିଲି । କିନ୍ତୁ ବର୍ତ୍ତମାନ ଯୁଦ୍ଧ ପ୍ରତି ମୋ ହୃଦୟରେ ଘୃଣା ପୂରିରହିଥିବା ସତ୍ତ୍ୱେ ଏ ହତ୍ୟାକାଣ୍ଡକୁ ବନ୍ଦ କରିବାପାଇଁ ମୁଁ ଯୁଦ୍ଧର ବିପଦକୁ ନିଶ୍ଚୟ ମୁଣ୍ଡାଇବି ।' ତାଙ୍କ ମନଭିତରେ ପରସ୍ପରବିରୋଧି ବିଚାରଗୁଡ଼ିକର ସଂଘର୍ଷ କିପରି ଚାଲିଛି, ତାହା ତାଙ୍କର ପରବର୍ତ୍ତୀ ବାକ୍ୟଗୁଡ଼ିକରେ ପ୍ରକାଶ ପାଉଛି । 'ମୁଁ ଯୁଦ୍ଧକରିବା ବିପଦକୁ ନିଶ୍ଚୟ ମୁଣ୍ଡାଇବି, ମାତ୍ର ବର୍ତ୍ତମାନ ସୁଦ୍ଧା ମୋର ଅଧମ ପ୍ରକୃତି ନରହତ୍ୟା କରିବାର ଚିନ୍ତାରେ ବ୍ୟାକୁଳ ହୋଇ ପଛକୁ ହଟିଯାଉଛି । ମୁଁ ନିଜେ

ଅନ୍ୟକୁ ହତ୍ୟାକରିବା ପରିବର୍ତ୍ତେ ନିଜର ପ୍ରାଣ ଦେବାକୁ ଅଧିକ ପସନ୍ଦ କରିବି । କିନ୍ତୁ ନିଜେ ପ୍ରାଣଦେବା ପରିବର୍ତ୍ତେ ଅନ୍ୟର ପ୍ରାଣ ନେବା ମୋର କର୍ତ୍ତବ୍ୟ ହେବ ନାହିଁ କି ? ଏହାର ଜବାବରେ ସମ୍ଭବତଃ ଗାନ୍ଧୀ କହିବେ ଯେ ଯେଉଁ ଲୋକ ନିଜକୁ ନିଜ ଆୟତ୍ତରେ ରଖିବାର ସ୍ୱରାଜ୍ୟ ସାଧନ କରିଛି, ତାହା ଆଗରେ ଏ ପ୍ରକାରର ଦ୍ୱନ୍ଦ୍ୱ ବା ଧର୍ମସଂକଟ ଦେଖା ଦେବ ନାହିଁ । ଏହି ବ୍ୟକ୍ତିଗତ ସ୍ୱରାଜ୍ୟ ମୁଁ ଅର୍ଜନ କରିପାରିଛି ବୋଲି ଦାବୀ କରୁ ନାହିଁ । ମାତ୍ର ମୁଁ ସେହି ଆତ୍ମ-ସ୍ୱରାଜ୍ୟ ପାଇ ପାରିଥିଲେ ଯେ ତହାର ପଶ୍ଚିମ ୟୁରୋପରେ ବର୍ତ୍ତମାନ ଯେଉଁ ସମସ୍ୟା ଦେଖା ଦେଇଛି, ତାହା ମୋ ପାଇଁ ଉଣା ଚିନ୍ତାସଙ୍କୁଳ ହୋଇଥାନ୍ତା, ତାହା ମୋର ବିଶ୍ୱାସ ହେଉନାହିଁ ।”

ମିଷ୍ଟର୍ କୋଲ୍ ଯେଉଁ ପରିସ୍ଥିତିର ଉଲ୍ଲେଖ କରିଛନ୍ତି, ତାହା ହେଉଛି ମଣିଷର ବିଶ୍ୱାସକୁ ପରୀକ୍ଷା କରିବାର କଷୋଟି । କିନ୍ତୁ ଏ ପ୍ରଶ୍ନର ଜବାବ ଗାନ୍ଧୀଜୀ ଅନେକଥର ଦେଇ ସାରିଛନ୍ତି । ଗାନ୍ଧୀଜୀ ନିଜେ ବ୍ୟକ୍ତିଗତ ସ୍ୱରାଜ୍ୟ ପୂର୍ଣ୍ଣରୂପେ ଅର୍ଜନ କରି ନ ଥିଲେ ହେଁ, ଯେ ପର୍ଯ୍ୟନ୍ତ ତାଙ୍କର ଦେଶ ଭାଇମାନେ ସ୍ୱରାଜ୍ୟ ନ ପାଇଛନ୍ତି, ସେ ପର୍ଯ୍ୟନ୍ତ ସେ ନିଜେ ପାଇଥିବା ସ୍ୱରାଜ୍ୟକୁ ଅପୂର୍ଣ୍ଣ ମନେ କରୁଛନ୍ତି । ମାତ୍ର ସେହି ବିଶ୍ୱାସ-ବଳରେ ହିଁ ସେ ବଞ୍ଚି ରହିଛନ୍ତି । ଅହିଂସାରେ ତାଙ୍କର ଯେଉଁ ବିଶ୍ୱାସ ରହିଛି, ତାହା ଇଟାଲୀୟ ବା ଜାପାନୀ ବର୍ବର ହତ୍ୟାକାଣ୍ଡର ବର୍ଣ୍ଣନା ଶୁଣି ଦୋହଲି ଯାଉନାହିଁ । କାରଣ, ହିଂସାର ପରିଣତିରୁ କେବଳ ହିଂସା ହିଁ ଉପୁଜେ । ପୁଣି, ଥରେ ସେ ବାଟରେ ଗତି କଲେ ତାହାର ଆଉ ଅନ୍ତ ହୁଏ ନାହିଁ । ‘ଚୀନର ପକ୍ଷ ଗ୍ରହଣକରି

ଆପଣଙ୍କର ଯୁଦ୍ଧ କରିବା ଉଚିତ’ କହୁଥିବା ଜଣେ ଚୀନା-ଭାଇଙ୍କୁ ଜବାବ ଦେଇ ଫିଲିପ୍ ମମ୍‌ଫୋର୍ଡ଼ ‘ଉଆର୍ ରେଜିଷ୍ଟର୍’ ନାମକ ପତ୍ରିକାରେ ଯାହା ଲେଖିଛନ୍ତି, ତାହା ନିମ୍ନରେ ଉଦ୍ଧୃତ ହେଲା :

"ଆପଣଙ୍କ ଶତ୍ରୁ ହେଉଛନ୍ତି ଜାପାନର ସରକାର । ଜାପାନର କୃଷୀ ଓ ସୈନିକମାନେ ଆପଣଙ୍କର ଶତ୍ରୁ ନୁହନ୍ତି । ସେମାନଙ୍କୁ ଯୁଦ୍ଧ କରିବାପାଇଁ କାହିଁକି କୁହାଯାଉଛି, ତାହାର କାରଣ ସୁଦ୍ଧା ସେ ଅଶିକ୍ଷିତ ହତଭାଗ୍ୟ ପ୍ରଜାଙ୍କୁ ଜଣାନାହିଁ । ତଥାପି, ଆପଣ ଯଦି ଆପଣଙ୍କ ଦେଶରକ୍ଷା ପାଇଁ ସାଧାରଣ ଯୁଦ୍ଧ-କୌଶଳ ପ୍ରୟୋଗ କରିବେ, ତେବେ ଏହି ନିର୍ଦ୍ଦୋଷ ଲୋକଙ୍କୁ, ଯେଉଁମାନେ କି ପ୍ରକୃତରେ ଆପଣଙ୍କ ଶତ୍ରୁ ନୁହନ୍ତି, ସେହିମାନଙ୍କୁ ହତ୍ୟା କରିବାକୁ ଆପଣଙ୍କୁ ପଡ଼ିବ । ଗାନ୍ଧୀଜୀ ଭାରତବର୍ଷରେ ଯେଉଁ ଅହିଂସାତ୍ମକ ଉପାୟ ଅବଲମ୍ବନ କରିଛନ୍ତି, ସେହି ଅହିଂସାତ୍ମକ ପ୍ରଣାଳୀ ସହିତ ଚୀନର ଧର୍ମଗୁରୁମାନଙ୍କ ଉପଦେଶର ବହୁତ ସାମଞ୍ଜସ୍ୟ ଅଛି । ଚୀନ ଯଦି ନିଜର ଆତ୍ମରକ୍ଷା ପାଇଁ ଗାନ୍ଧୀଜୀଙ୍କର ସେହି ପ୍ରଣାଳୀ ଅବଲମ୍ବନ କରିବ, ତେବେ ମୁଁ ନିଃସଂକୋଚରେ କହିବି ଯେ ୟୁରୋପର ଅସ୍ତ୍ରଯୁଦ୍ଧକୁ ଅନୁକରଣ କରିବା ଅପେକ୍ଷା ଏ ଅହିଂସାତ୍ମକ ଉପାୟରେ ଚୀନ ତେର ବେଶୀ ମଙ୍ଗଳ ହେବ । × × × × । ଚୀନର ପ୍ରଜା ପୃଥିବୀରେ ସବୁଠାରୁ ଶାନ୍ତିପ୍ରିୟ ଜାତି ଏବଂ ପୃଥିବୀର ଯେ କୌଣସି ଯୁଦ୍ଧପ୍ରିୟ ଜାତିଙ୍କ ତୁଳନାରେ ନିଜକୁ ଓ ନିଜର ଜାତୀୟ ସଂସ୍କୃତିକୁ ସେ ଯେ ଅଧିକ କାଳ ବଞ୍ଚାଇ ରଖି ପାରିଛି, ସେହିଟି ମାନବ ଜାତିପାଇଁ ଗୋଟିଏ ବଡ଼ ଶିକ୍ଷାପ୍ରଦ ତଥ୍ୟ । ଯେଉଁ ଚୀନବାସୀମାନେ ନିଜ ଦେଶକୁ ରକ୍ଷା କରିବା ପାଇଁ ବୀରତ୍ୱର ସହିତ ଯୁଦ୍ଧ କରୁଛନ୍ତି, ସେମାନଙ୍କ ପ୍ରତି ଆମ ମନରେ ସମ୍ମାନ ନାହିଁ

ବୋଲି ଆପଣମାନେ ଭାବିବେ ନାହିଁ । ସେମାନଙ୍କର ତ୍ୟାଗ ଓ ଆମ୍ତୋତ୍ସର୍ଗକୁ ଆମେ ସମ୍ମାନ କରୁ ଏବଂ ଆମେ ଜାଣୁ ଯେ ସେମାନଙ୍କ ସିଦ୍ଧାନ୍ତ ଆମ ସିଦ୍ଧାନ୍ତ ଠାରୁ ପୃଥକ୍ । ତଥାପି ଆମମାନଙ୍କର ବିଶ୍ୱାସ, ସର୍ବପ୍ରକାର ପରିସ୍ଥିତିରେ ହିଂସା କ୍ଷତିକାରକ, ଏବଂ ସେଥିରୁ କୌଣସି ଭଲ ଫଳ ମିଳିବାର ସମ୍ଭାବନା ଆଦୌ ନାହିଁ । ଶାନ୍ତିବାଦର ମାର୍ଗ ଅବଲମ୍ବନ କଲେ, ତାହା ଆପଣଙ୍କୁ ସର୍ବ ପ୍ରକାରର ଦୁଃଖରୁ ଉଦ୍ଧାର କରିବ ନାହିଁ ସତ୍ୟ ମାତ୍ର ମୋର ବିଶ୍ୱାସ, କିଛିକାଳ ପରେ ଆପଣଙ୍କ ଭାବୀ ବିଜେତାଙ୍କ ଉପରେ ଆପଣଙ୍କ ଅହିଂସା ସମୁଦାୟ ଅସ୍ତ୍ରଶସ୍ତ୍ର ଓ ସୈନ୍ୟବାହିନୀ ଅପେକ୍ଷା ଅଧିକ ପ୍ରଭାବ ପକାଇବ ଏବଂ ସବୁଠାରୁ ବଡ଼ କଥା ହେଉଛି ଅହିଂସା ଆପଣଙ୍କ ଜାତିର ଆଦର୍ଶକୁ ବଞ୍ଚେଇ ରଖିବ ।"

କୁମାରୀ ଇଭାନ୍ ଟଥିବୋନ୍ ମଧ୍ୟ ଏହି ଧରଣର ପ୍ରଶ୍ନ ଉତ୍ଥାପନ କରିଛନ୍ତି; ସେ ଲେଖିଛନ୍ତି – "ଅତ୍ୟାଚାରୀ ଆଗରେ ମୁଣ୍ଡ ନୁଆଇଁ ଓ ନିଜର ଅନ୍ତରାତ୍ମାର ଆଦେଶର ବିରୁଦ୍ଧାଚରଣ କରିଁଯଦି କ୍ଷୁଦ୍ର କୋମଳ ଶିଶୁଙ୍କୁ ରକ୍ଷା କରି ହୁଅନ୍ତା, ତେବେ ପୃଥିବୀର ଏପରି ସାଧାରଣ ମନୁଷ୍ୟ ବା ସଜ୍ଜନ କିଏ ଅଛି ଯେ ଏ ହତ୍ୟା ଘଟିବାକୁ ଦିଅନ୍ତା ? ଗାନ୍ଧୀ ଏ ପ୍ରଶ୍ନର ଉତ୍ତର ଦେଇ ନାହାନ୍ତି । ସେ ଏ ପ୍ରଶ୍ନଟି ମୂଳରୁ ଉତ୍ଥାପନ କରି ନାହାନ୍ତି । ଏ ସମ୍ପର୍କରେ ଯୀଶୁଖ୍ରୀଷ୍ଟଙ୍କ ଉପଦେଶ ବରଂ ଅଧିକ ସ୍ପଷ୍ଟ । ସେ କହିଛନ୍ତି—'ମୋତେ ବିଶ୍ୱାସ କରୁଥିବା ଶିଶୁଙ୍କ ଉପରକୁ ଯେଉଁ ଲୋକ ହାତ ଉଞ୍ଚେଇବ, ତାହା ବେକରେ ଚକି ବାନ୍ଧି ତାକୁ ସମୁଦ୍ର ପାଣିରେ ବୁଡ଼େଇ ଦେବ ।' ଏ ସମ୍ବନ୍ଧରେ ଗାନ୍ଧୀ ଅପେକ୍ଷା ଯୀଶୁଖ୍ରୀଷ୍ଟଙ୍କଠାରୁ ଆମକୁ ଅଧିକ ସାହାଯ୍ୟ ମିଳୁଛି...।"

ମୋର ମନେ ହେଉଛି ଯୀଶୁଖ୍ରୀଷ୍ଟଙ୍କର ଏ ଉକ୍ତି କେବଳ ତାଙ୍କର ସାତ୍ତ୍ୱିକ କ୍ରୋଧ ସୂଚାଉଛି । ସେ ଯେଉଁ ପଦକ୍ଷେପ ଗ୍ରହଣ କରିବା ପାଇଁ କହିଛନ୍ତି, ତାହା ଅପରାଧୀକୁ ଅନ୍ୟ କେହି ଦଣ୍ଡ ଦେବା ଦୃଷ୍ଟିରୁ କହି ନାହାନ୍ତି । ବରଂ ଅପରାଧୀ ନିଜର ପ୍ରାୟଶ୍ଚିତ୍ତ ପାଇଁ ନିଜକୁ ନିଜେ କି ଦଣ୍ଡ ଦେବ, ଏ ଉକ୍ତି ତାହା ହିଁ ସୂଚାଉଛି । ପୁଣି କୁମାରୀ ରଥବୋନ୍‌ଙ୍କ ମନରେ କ'ଣ ଏ ଦୃଢ଼ ବିଶ୍ୱାସ ଅଛି ଯେ, ଯାହାକୁ ସେ ଯୀଶୁଙ୍କ ପନ୍ଥା ମନେ କରୁଛନ୍ତି, ସେହି ପନ୍ଥା ଅବଲମ୍ବନ କରି ସେ ଶିଶୁମାନଙ୍କୁ ମୃତ୍ୟୁ ମୁଖରୁ ରକ୍ଷା କରିପାରିବେ ? ଗାଂଧୀଜୀ ଏ ପ୍ରଶ୍ନ ମୂଳରୁ ଉତ୍‌ଥାପନ କରି ନାହାନ୍ତି ବୋଲି ଯେ ସେ ଭାବୁଛନ୍ତି, ତାଙ୍କର ଏ ଧାରଣା ଯଥାର୍ଥ ନୁହେଁ । ସେ ପ୍ରଶ୍ନ ଉଠାଇଛନ୍ତି ଓ ତାର ଉତ୍ତର ମଧ୍ୟ ସ୍ପଷ୍ଟ ଭାଷାରେ ଦେଇଛନ୍ତି । ତେଅର ଶହ ବର୍ଷ ପୂର୍ବରୁ ମୁସଲମାନ ଶହୀଦମାନେ ମଧ୍ୟ ଏ ପ୍ରଶ୍ନ ଉଠାଇଥିଲେ ଓ ନିଜର ଆଚରଣଦ୍ୱାରା ତାହାର ଜବାବ ଦେଇଥିଲେ । ଅତ୍ୟାଚାରୀ ଆଗରେ ମୁଣ୍ଡ ନୁଆଁଇବା ଓ ନିଜର ବିବେକକୁ ପ୍ରତାରିତ କରିବା ଅପେକ୍ଷା ସେମାନେ ନିଜେ ନିଜର ସ୍ତ୍ରୀ ଓ ପିଲାମାନଙ୍କୁ ଭୋକ ଓ ଶୋଷରେ ଛଟପଟ ହୋଇ ମରୁଥିବାର ଦୃଶ୍ୟ ଦେଖିବାଟାକୁ ଅଧିକ ପସନ୍ଦ କରିଥିଲେ । କାରଣ, ଅତ୍ୟାଚାରୀ ଆଗରେ ମୁଣ୍ଡ ନୁଆଁଇବା ଓ ନିଜର ବିବେକକୁ ପ୍ରତାରିତ କରିବା ଫଳରେ ଆପଣ ଅତ୍ୟାଚାରୀଙ୍କୁ ନୂଆ ନୂଆ ଅତ୍ୟାଚାର କରିବା ପାଇଁ ଉତ୍‌ସାହ ଦିଅନ୍ତି ।

କିନ୍ତୁ କୁମାରୀ ରଥବୋନ୍ ମଧ୍ୟ 'ହିନ୍ଦ୍ ସ୍ୱରାଜ୍ୟ'କୁ ଅତ୍ୟନ୍ତ ପ୍ରଭାବଶାଳୀ କହିଛନ୍ତି ଏବଂ ଲେଖିଛନ୍ତି, ସେହି ବହିକୁ ପଢ଼ି, ସେଥିରେ ଯେଉଁ ସତ୍ୟେଟ-ପଣିଆ ରହିଛି, ତାହାକୁ ଦେଖି ମୋ ନିଜର ସତ୍ୟେଟ-ପଣିଆକୁ ଯାଞ୍ଚ କରିବାକୁ ମୁଁ ବାଧ

ହୋଇଅଛୁ । ଲୋକଙ୍କୁ ମୋର ନମ୍ର ନିବେଦନ ଯେ ସେମାନେ ଏ ବହିଖଣ୍ଡ ପଢ଼ନ୍ତୁ ।'

'ଏସିଆନ ପାଥ୍' ମାସିକ ପତ୍ରିକାର ସମ୍ପାଦକ ଏ 'ହିନ୍ଦ୍ ସ୍ୱରାଜ୍ୟ ବିଶେଷାଙ୍କ' ପ୍ରକାଶିତ କରି ଶାନ୍ତି ଓ ଅହିଂସାର ଉଦ୍ଦେଶ୍ୟ ସାଧନ ଦିଗରେ ସାହାଯ୍ୟ କରିଛନ୍ତି ବୋଲି ଆମକୁ ନିର୍ବିବାଦରେ ସ୍ୱୀକାର କରିବାକୁ ହେବ ।

**ମହାଦେବ ହରିଭାଇ ଦେସାଇ**

# ପ୍ରସ୍ତାବନା

ଲର୍ଡ଼ ଲୋଥିଆନ୍ ସେବାଗ୍ରାମରେ ଥିବାବେଳେ ମୋତେ ଖଣ୍ଡିଏ 'ହିନ୍ଦ୍ ସ୍ୱରାଜ୍ୟ' ବହି ମାଗିଲେ । ସେ ସେତେବେଳେ କହିଲେ ଯେ ଗାଂଧୀଜୀ ଆଜକାଲ ଯାହା ଯାହା କହୁଛନ୍ତି ସେ ସବୁ କଥା ଏ ଛୋଟ ବହିଟିରେ ସୂକ୍ଷ୍ମ ଆକାରରେ ରହିଛି ଏବଂ ଗାଂଧୀଜୀଙ୍କୁ ଯଥାର୍ଥ ଭାବରେ ବୁଝିବା ପାଇଁ ଏ ବହିକୁ ବାରମ୍ବାର ପଢ଼ିବା ଦରକାର ।

ବଡ଼ ଆଶ୍ଚର୍ଯ୍ୟଜନକ କଥା ଯେ ଠିକ୍ ସେହି ସମୟରେ ଶ୍ରୀମତୀ ସୋଫିଆ ୱାଡ଼ିଆ 'ହିନ୍ଦ୍ ସ୍ୱରାଜ୍ୟ' ବହି ସମ୍ବନ୍ଧରେ ଗୋଟିଏ ପ୍ରବନ୍ଧ ଲେଖିଲେ । ପ୍ରବନ୍ଧରେ ସେ ଆମର ମନ୍ତ୍ରୀ, ଆସେମ୍ବ୍ଲିର ମେମ୍ବର, ଭାରତୀୟ ସିଭିଲ ସର୍ଭିସ୍‌ର ଗୋରା ଓ କଳା ଲୋକମାନଙ୍କୁ ଏପରିକି, ଆଧୁନିକ ଗଣତନ୍ତ୍ରର ଅହିଂସାତ୍ମକ ପ୍ରୟୋଗର ସଫଳତା ମନାସୁଥିବା ପ୍ରତ୍ୟେକ ନାଗରିକଙ୍କୁ ଏହି ବହିକୁ ବାରମ୍ବାର ପଢ଼ିବା ପାଇଁ ସୁପାରିଶ କରିଥିଲେ । ସେହି ବ୍ୟକ୍ତିଙ୍କୁ ଜବାବ ଦେବା ଉଦ୍ଦେଶ୍ୟରେ ଏ ବହି ସେ ଗୁଜରାଟୀ ଭାଷାରେ ଲେଖିଥିଲେ । ଏବଂ ଇଣ୍ଡିଆନ ଓପିନିୟନ୍ ନାମକ ଯେଉଁ ସାପ୍ତାହିକ ପତ୍ରିକାର ସମ୍ପାଦକ ଥିଲେ, ସେଥିରେ କ୍ରମଶଃ ପ୍ରକାଶ ପାଇଥିଲା । ପରେ ଏହା ବହି ଆକାରରେ ପ୍ରକାଶ ପାଇଲା ଏବଂ ବମ୍ବେ ସରକାର ବହିଟିକୁ ବେଆଇନ୍ ଘୋଷଣା କରିଦେଲେ । ଗାଂଧୀଜୀ କ୍ୟାଲେନ୍‌ବ୍ୟାକ୍ ସାହେବଙ୍କ ପାଇଁ ସେ

ବହିକୁ ଇଂରାଜୀରେ ଅନୁବାଦ କରିଥିଲେ । ବମ୍ବେଇ ସରକାରଙ୍କ କାର୍ଯ୍ୟର ଜବାବ ସ୍ୱରୂପ ତାହା ପୁଣି ପ୍ରକାଶିତ ହେଲା । ଦକ୍ଷିଣ ଆଫ୍ରିକା ଗସ୍ତରେ ୧୯୧୨ ମସିହାରେ ଗୋଖଲେ ଏ ଅନୁବାଦକୁ ଦେଖିଲେ । ତାଙ୍କୁ ଏହା ଏତେ ଅମାର୍ଜିତ ଓ ଏହା ଲେଖିବାର କଳ୍ପନା ଏତେ ତରବରିଆ ଜଣାପଡ଼ିଲା, ଯେ ସେ ଭବିଷ୍ୟତ୍ ବାଣୀ କରିଥିଲେ ଯେ ଗାଂଧୀଜୀ ବର୍ଷଟିଏ ଭାରତବର୍ଷରେ ରହିସାରିବା ପରେ ନିଜେ ଏ ବହିକୁ ନଷ୍ଟ କରିଦେବେ । କିନ୍ତୁ ଗୋଖଲେଜୀଙ୍କର ସ୍ମୃତି ପ୍ରତି ମୁଁ ସମ୍ମାନ ଦେଖାଇ ସୁଦ୍ଧା କହୁଛି ଯେ ତାଙ୍କର ଏ ଭବିଷ୍ୟତ୍ ବାଣୀ ସତ୍ୟ ହେଲା ନାହିଁ । ୧୯୨୧ ରେ ଗାଂଧୀଜୀ ଏହି ବହି ସମ୍ବନ୍ଧରେ ଲେଖିବାକୁ ଯାଇ କହିଛନ୍ତି :

"ଏହା ବିଦ୍ୱେଷ ପରିବର୍ତ୍ତେ ପ୍ରେମଧର୍ମ ଶିଖାଉଛି । ହିଂସା ପରିବର୍ତ୍ତେ ଆତ୍ମବଳିଦାନ କଥା କହୁଛି, ପଶୁବଳର ସମ୍ମୁଖୀନ ହେବା ପାଇଁ ଆତ୍ମବଳକୁ ଠିଆ କରୁଛି । ସେଥିରୁ ମୁଁ କେବଳ ଗୋଟିଏ ଶବ୍ଦ ଜଣେ ମହିଳା ବନ୍ଧୁଙ୍କ କଥା ମାନି ପ୍ରତ୍ୟାହାର କରିନେଉଛି । ସେହି ଗୋଟିଏ ଶବ୍ଦ ଛଡ଼ା ଆଉ କୌଣସି ପ୍ରକାରର ଅଦଳବଦଳ କରୁନାହିଁ । ଏ ବହିରେ 'ଆଧୁନିକ' ସଭ୍ୟତାର କଡ଼ା ସମାଲୋଚନା କରାଯାଇଛି । ଏ ବହି ୧୯୦୯ ମସିହାରେ ଲେଖା ହୋଇଥିଲା । ଏ ସମ୍ବନ୍ଧରେ ମୋର ମତ ସେତେବେଳଠାରୁ ବର୍ତ୍ତମାନ ଆହୁରି ଦୃଢ଼ତର ହେଲାଣି ।···କିନ୍ତୁ ମୁଁ ପାଠକମାନଙ୍କୁ ଗୋଟିଏ ସତର୍କବାଣୀ ଶୁଣାଇ ଦେବାକୁ ଚାହେଁ । ସେମାନେ ଯେପରି ନ ଭାବନ୍ତି ଯେ ମୁଁ ଏ ବହିରେ ଯେଉଁ ସ୍ୱରାଜ୍ୟର ଚିତ୍ର ଦେଇଛି, ସେହି ସ୍ୱାୟତ୍ତ-ଶାସନ (ସ୍ୱରାଜ୍ୟ) ଅର୍ଜନ କରିବା ପାଇଁ ମୋର ଅଭିପ୍ରାୟ ରହିଛି ।

ମୁଁ ଜାଣେ ଯେ ଭାରତବର୍ଷ ବର୍ତ୍ତମାନ ସେଥିପାଇଁ ପ୍ରସ୍ତୁତ ହୋଇନାହିଁ । ମୋର ଏ କଥାରୁ ମୋ ଧୃଷ୍ଟତାର ଆଭାସ ମିଳିପାରେ ମାତ୍ର ମୋ ବିଶ୍ୱାସରେ ମୁଁ ଦୃଢ଼ ଅଛି । ଏ ବହିରେ ମୁଁ ଯେଉଁ ସ୍ୱାୟତ୍ତ-ଶାସନର ଚିତ୍ର ଦେଇଛି, ସେଥିପାଇଁ ମୋର ବ୍ୟକ୍ତିଗତ ପ୍ରଚେଷ୍ଟା ଲାଗିରହିଛି । କିନ୍ତୁ ଭାରତର ଜନସାଧାରଣର ଅଭିଳାଷ ଅନୁଯାୟୀ ପାର୍ଲାମେଣ୍ଟାରୀ ସ୍ୱରାଜ୍ୟ ଲାଭ କରିବା ପାଇଁ ଆଜି ନିଃସନ୍ଦେହ ରୂପେ ମୋର ସାମୁଦାୟିକ କାର୍ଯ୍ୟକ୍ରମରେ ମୁଁ ନିବିଷ୍ଟ ଅଛି ।"

ଏହି ବହିରେ କେତେକ ସ୍ଥାନରେ ଭାଷା ବଦଳାଇବା ଛଡ଼ା ୧୯୩୮ରେ ସୁଦ୍ଧା ଗାଂଧୀଜୀ ଆଉ କିଛି ଅଦଳବଦଳ କରିବାର ଆବଶ୍ୟକତା ଅନୁଭବ କଲେ ନାହିଁ । ସେଥିପାଇଁ ଏ ବହିକୁ ସଂକ୍ଷିପ୍ତ କରା ନ ଯାଇ ଏହା ପୁଣି ପ୍ରକାଶିତ ହେଉଛି ।

ସ୍ୱରାଜ୍ୟ ପାଇଁ ଭାରତବର୍ଷ ପ୍ରସ୍ତୁତ ହୋଇଥାଉ ବା ନ ଥାଉ, ମୂଳ ବୀଜ ବା ସୂତ୍ର ସମ୍ବଳିତ ଏହି ପୁସ୍ତକ ନିଶ୍ଚିତ ଭାରତବାସୀମାନଙ୍କର ଅଧ୍ୟୟନ କରିବା ଶ୍ରେୟସ୍କର ଅଟେ । ସତ୍ୟ ଅହିଂସାର ସିଦ୍ଧାନ୍ତକୁ ଗ୍ରହଣ କଲେ ତାହାର ଅନ୍ତିମ ଯୁକ୍ତିଯୁକ୍ତ ପରିଣତି କଅଣ ହେବ, ତାହା ଏଥିରେ ଦିଆଯାଇଛି । ସେହି ସିଦ୍ଧାନ୍ତଗୁଡ଼ିକୁ ଗ୍ରହଣ କରିବା ଉଚିତ ବା ତ୍ୟାଖ୍ୟାନ କରିବା ଉଚିତ, ତାହା ତତ୍‌ପରେ ସେମାନେ ନିଷ୍ପତ୍ତି କରିବେ ।

ମହାଦେବ ହରିଭାଇ ଦେସାଇ
ଉଆର୍ଦ୍ଧା
ତା ୨ । ୨ । ୧୯୩୮

# କୈଫିୟତ

ମୋର ଏ ଛୋଟ ବହି ଖଣ୍ଡିକ ବ୍ୟାପକ ଭାବରେ ଅନ୍ୟମାନଙ୍କର ଦୃଷ୍ଟି ଆକର୍ଷଣ କରିଥିବା ବାସ୍ତବିକ ମୋ ପକ୍ଷରେ ଏକ ସୌଭାଗ୍ୟର ବିଷୟ । ମୂଳ ବହିଟି ଗୁଜରାଟି ଭାଷାରେ ଲେଖା ହୋଇଥିଲା । ଏ ବହିର ଗତି, ପରିଣତି ଅତି ବିଚିତ୍ର । ଏହା ପ୍ରଥମେ ଦକ୍ଷିଣ ଆଫ୍ରିକାରେ 'ଇଣ୍ଡିଆନ ଓପିନିଅନ୍' ନାମକ ସାପ୍ତାହିକ ପତ୍ରିକାରେ ପ୍ରକାଶ ପାଇଥିଲା । ୧୯୦୯ ମସିହାରେ ଲଣ୍ଡନରୁ ଦକ୍ଷିଣ ଆଫ୍ରିକାକୁ ଫେରିବାବେଳେ ଜାହାଜରେ ମୁଁ ଏହାକୁ ଲେଖିଥିଲି । ଭାରତରେ ହିଂସାବାଦୀ-ମାନଙ୍କୁ ଓ ଦକ୍ଷିଣ ଆଫ୍ରିକାରେ ସେହି ସ୍ତରରେ ସମବିଶ୍ୱାସୀ ଲୋକଙ୍କୁ ଜବାବ୍ ଦେବାପାଇଁ ଏହା ଲେଖା ହୋଇଥିଲା । ଲଣ୍ଡନରେ ରହୁଥିବା ଜଣାଶୁଣା ପ୍ରତ୍ୟେକ ଅରାଜକତାବାଦୀ ଭାରତୀୟଙ୍କର ସମ୍ପର୍କରେ ମୁଁ ଆସିଥିଲି । ମୋ ମନ ଉପରେ ସେମାନଙ୍କ ବୀରତ୍ୱର ପ୍ରଭାବ ପଡ଼ିଥିଲା । କିନ୍ତୁ ମୋର ମନେହେଲା ଯେ ସେମାନଙ୍କର ଉତ୍ସାହ ଭୁଲ ବାଟରେ ଗତି କରୁଛି । ମୁଁ ଅନୁଭବ କଲି ଯେ ଭାରତବର୍ଷର ଦୁଃଖଦୁର୍ଦ୍ଦଶାର ପ୍ରତିକାର ହିଂସା ଦ୍ୱାରା ହୋଇପାରିବ ନାହିଁ । ଭାରତବର୍ଷର ସଂସ୍କୃତି ବା ସଭ୍ୟତା ଦୃଷ୍ଟିରୁ ତାହାର ଆତ୍ମରକ୍ଷାପାଇଁ ଅନ୍ୟ ଧରଣର ଉଚ୍ଚସ୍ତରର ଅସ୍ତ୍ର ଆବଶ୍ୟକ । ଦକ୍ଷିଣ ଆଫ୍ରିକାର ସତ୍ୟାଗ୍ରହ ସେତେବେଳକୁ ଦୁଇ ବର୍ଷ ସୁଦ୍ଧା ଚାଲି ନ ଥାଏ, କିନ୍ତୁ ତାହାର

ବକାଶ ଏତେଦୂର ଯଥେଷ୍ଟ ହୋଇଥିଲା ଯେ ସେ ସମ୍ବନ୍ଧରେ ଲେଖିବାକୁ ମୋର ଅନେକ ପରିମାଣରେ ଆତ୍ମବିଶ୍ୱାସ ଜନ୍ମି ସାରିଥିଲା । ମୋର ସେହି ପ୍ରବନ୍ଧଗୁଡ଼ିକୁ ପାଠକମାନେ ଏତେଦୂର ପସନ୍ଦ କଲେ ଯେ ତାହା ପୁସ୍ତକ ଆକାରରେ ପ୍ରକାଶିତ ହେଲା । ଭାରତବର୍ଷରେ ଏ ବହି ପ୍ରତି ଲୋକଙ୍କ ଦୃଷ୍ଟି ଆକର୍ଷିତ ହେଲା । ବମ୍ବେ ସରକାର ଏ ବହିକୁ ବେ-ଆଇନ୍ ଘୋଷଣା କରିଦେଲେ । ମୁଁ ତାଙ୍କର ଏ କାର୍ଯ୍ୟର ଜବାବ ସ୍ୱରୂପ ତାହାର ଇଂରାଜୀ ଅନୁବାଦ ଛାପିଲି । ମୋର ଇଂରାଜୀ ବନ୍ଧୁମାନଙ୍କୁ ଏ ବହିର ବିଚାରଧାରା ସମ୍ବନ୍ଧରେ ଅବହିତ କରାଇବା ମୋର କର୍ତ୍ତବ୍ୟ ମଣିଲି ।

ମୋ ମତରେ ଏ ବହି ଖଣ୍ଡିକ ଏପରି ଧରଣର ଯେ ଏହାକୁ ଛୋଟ ପିଲାଙ୍କ ହାତରେ ସୁଦ୍ଧା ଦିଆଯାଇ ପାରେ । ଏହା ବିଦ୍ୱେଷ ସ୍ଥାନରେ ପରିବର୍ତ୍ତେ ପ୍ରେମମାତ୍ର ଶିକ୍ଷା ଦେଉଛି । ହିଂସା ପରିବର୍ତ୍ତେ ଆତ୍ମବଳିଦାନ ଶିଖାଉଛି । ପଶୁବଳର ଟକ୍କର ଦେବାପାଇଁ ଆତ୍ମବଳକୁ ଠିଆ କରାଉଛି । ଏହାର ଏକାଧିକ ସଂସ୍କରଣ ହୋଇ ସାରିଲାଣି । ଯେଉଁମାନେ ଏହା ପଢ଼ିବାକୁ ମନ କରିବେ, ସେମାନଙ୍କୁ ଏହା ପଢ଼ିବାପାଇଁ ମୁଁ ନିଶ୍ଚୟ ସୁପାରିଶ କରିବି । ସେଥିରୁ ମୁଁ କେବଳ ଗୋଟିଏ ଶବ୍ଦ ମୋର ଜଣେ ମହିଳା ବନ୍ଧୁଙ୍କର ମନ ବା ମତ ରକ୍ଷା କରି ପ୍ରତ୍ୟାହାର କରୁଛି । ଏହାଛଡ଼ା ଆଉ କୌଣସି ଅଦଳବଦଳ ମୁଁ କରୁନାହିଁ ।

ଏ ବହିରେ 'ଆଧୁନିକ ସଭ୍ୟତା'ର କଠୋର ସମାଲୋଚନା କରାଯାଇଛି । ୧୯୦୯ ମସିହାରେ ଏ ବହି ଲେଖା ହୋଇଥିଲା । ଏଥିରେ ମୁଁ ଯେଉଁ ମତବ୍ୟକ୍ତ କରିଛି ତାହା ପୂର୍ବାପେକ୍ଷା ଆଜ

ଆହୁରି ଦୃଢ଼ । ମୋର ଧାରଣା, ଭାରତବର୍ଷ ଯଦି 'ଆଧୁନିକ ସଭ୍ୟତା'କୁ ତ୍ୟାଗ କରିବ, ତେବେ ତଦ୍ୱାରା ତାର ଲାଭ ହିଁ ହେବ ।

କିନ୍ତୁ ମୁଁ ପାଠକମାନଙ୍କୁ ଗୋଟିଏ ସତର୍କବାଣୀ ଶୁଣାଇ ଦେବାକୁ ଚାହେଁ ଯେ ଏ ବହିରେ ମୁଁ ଯେଉଁ ସ୍ୱରାଜ୍ୟର ଚିତ୍ର ଦେଇଛି, ସେହିପରି ସ୍ୱରାଜ୍ୟ ସ୍ଥାପନ କରିବାପାଇଁ ବର୍ତ୍ତମାନ ଉଦ୍ୟମ ଚଳାଇଛି ବୋଲି ସେମାନେ ଭାବନ୍ତୁ ନାହିଁ । ଭାରତବର୍ଷ ଯେ ବର୍ତ୍ତମାନ ସେ ସ୍ୱରାଜ୍ୟପାଇଁ ପ୍ରସ୍ତୁତ ହୋଇନାହିଁ, ସେ କଥା ମୁଁ ଜାଣେ । ଏପରି କହିବାଟା ମୋର ଧୃଷ୍ଟତା ବିବେଚିତ ହୋଇପାରେ । କିନ୍ତୁ ଏହାହିଁ ମୋର ଦୃଢ଼ ବିଶ୍ୱାସ । ସେହି ସ୍ୱାୟତ୍ତଶାସନ ( ସ୍ୱରାଜ୍ୟ ) ଅର୍ଜନ କରିବାପାଇଁ ମୁଁ ମୋର ବ୍ୟକ୍ତିଗତ ପ୍ରଚେଷ୍ଟାରେ ଲାଗିରହିଛି । କିନ୍ତୁ ଭାରତର ଜନସାଧାରଣଙ୍କର ଅଭିଳାଷ ଅନୁଯାୟୀ ପାର୍ଲାମେଣ୍ଟାରି ସ୍ୱରାଜ୍ୟ ଲାଭ କରିବାପାଇଁ ଆଜି ନିଃସନ୍ଦେହରୂପେ ମୋର ସବୁ ସାମୁଦାୟିକ କାର୍ଯ୍ୟକ୍ରମରେ ମୁଁ ନିବିଷ୍ଟ ଅଛି । ରେଲୱେ ବା ହସପିଟାଲଗୁଡ଼ିକୁ ଧ୍ୱଂସ କରିଦେବା ମୋର ଅବଶ୍ୟ ଲକ୍ଷ୍ୟ ନୁହେଁ । ମାତ୍ର ଯଦି ସ୍ୱାଭାବିକ ଭାବରେ ସେଗୁଡିକ ଧ୍ୱଂସ ପାଇଯିବ, ତେବେ ମୁଁ ତାହାକୁ ସ୍ୱାଗତ କରିବି । ରେଲୱେ ବା ହସ୍ପିଟାଲ ଉଚ୍ଚ ଓ ନିର୍ଦ୍ଦୋଷ ସଂସ୍କୃତିର ସୂଚକ ନୁହେଁ । ଏଗୁଡ଼ିକ ଅପରିହାର୍ଯ୍ୟ ଅନିଷ୍ଟ । ଏ ଦୁଇଟି ମଧ୍ୟରୁ କୌଣସିଟା ଜାତିର ନୈତିକ ସ୍ତରକୁ ଇଞ୍ଚେ ସୁଦ୍ଧା ଉଚ୍ଚ କରେ ନାହିଁ । କୋର୍ଟ କଚେରୀଗୁଡ଼ିକୁ ସବୁଦିନ ପାଇଁ ଉଠେଇ ଦେବା ମୋର ଲକ୍ଷ୍ୟ ନୁହେଁ ମାତ୍ର ଯଦି ତାହା ହୋଇପାରନ୍ତା, ତେବେ ମୋର ମନୋବାଞ୍ଛା ପୂର୍ଣ୍ଣ ହୁଅନ୍ତା ।

କଳକାରଖାନାଗୁଡ଼ାକ ଧ୍ୱଂସ କରିଦେବା ପାଇଁ ତ ମୁଁ ଏହାଠାରୁ ଆହୁରି କମ୍ ଉଦ୍ୟମ କରୁଛି । ଏଥିପାଇଁ ଯେଉଁ ତ୍ୟାଗ ଓ ସରଳ ଜୀବନ ଲୋଡ଼ା, ସେଥିପାଇଁ ଲୋକେ ବର୍ତ୍ତମାନ ପ୍ରସ୍ତୁତ ହୋଇନାହାନ୍ତି ।

କାର୍ଯ୍ୟକ୍ରମଗୁଡ଼ିକ ମଧ୍ୟରୁ ବର୍ତ୍ତମାନ ଯାହା କାର୍ଯ୍ୟକାରୀ ହେଉଛି, ତାହା କେବଳ ଅହିଂସା । ମାତ୍ର ମୋତେ ଦୁଃଖର ସହିତ ସ୍ୱୀକାର କରିବାକୁ ପଡ଼ୁଛି ଯେ ସେହି ଅହିଂସା ମଧ୍ୟ ମୁଁ ଏ ବହିରେ ଦର୍ଶାଇଥିବା ଅହିଂସା-ଭାବନାର ଅନୁରୂପ ନୁହେଁ । ଯଦି ସେହି ଭାବନା ଅନୁସାରେ ଅହିଂସା ଆଚରିତ ହୋଇଥାନ୍ତା, ତେବେ ଭାରତବର୍ଷ ଏକାଦିନକେ ସ୍ୱରାଜ୍ୟ ପାଇ ଯାଇ ପାରନ୍ତା । ଯଦି ଭାରତ ଏହି ପ୍ରେମର ସିଦ୍ଧାନ୍ତକୁ ତାହାର ଧର୍ମର ଏକ ସକ୍ରିୟ ଅଂଶରୂପେ ଗ୍ରହଣ କରିବ ଓ ରାଜନୀତିରେ ମଧ୍ୟ ଏହାକୁ ସ୍ଥାନ ଦେବ, ତେବେ ଏ ଭାରତ-ଭୂମିକୁ ସ୍ୱରାଜ୍ୟ ସିଧା ସ୍ୱର୍ଗରୁ ଓହ୍ଲାଇ ଆସିବ । ମାତ୍ର ମୁଁ ଦୁଃଖର ସହିତ ଅବଗତ ଅଛି ଯେ ଏହା ଘଟିବା ବହୁ ଦୂରର କଥା ।

ମୋର ଏ ପ୍ରକାର ମତ ବ୍ୟକ୍ତ କରିବାର କାରଣ ହେଉଛି, ବର୍ତ୍ତମାନ ଯେଉଁ ଆନ୍ଦୋଳନ ଚାଲିଛି, ତାହାକୁ ବଦନାମ କରିବା ପାଇଁ ଏ ବହିର ଅନେକ ଅଂଶ ଉଦ୍ଧୃତ କରାଯାଉଛି । ମୁଁ ଏପରି ଅନେକ ଲେଖା ଦେଖିଛି ଯେଉଁଥିରେ ଅଭିଯୋଗ ଅଛି ଯେ ମୁଁ ଗୁପ୍ତ ବା ଅବୋଧ ଚାଲବାଜୀ କରୁଛି ଓ ବର୍ତ୍ତମାନ ଯେଉଁ ଗଣ୍ଡଗୋଳ ବା ଆନ୍ଦୋଳନ ଚାଲିଛି, ତାହାର ସୁଯୋଗ ନେଇ ମୋର ଖିଆଲଗୁଡ଼ାକ ଭାରତବର୍ଷର ଲୋକଙ୍କୁ କୌଶଳରେ ଧରାଇ ଦେବାକୁ ଚେଷ୍ଟା କରୁଛି ଏବଂ ଭାରତବର୍ଷର କ୍ଷତି କରି ମୁଁ ଧର୍ମ ସଂହାନ୍ତୀୟ ମୋର ପ୍ରୟୋଗଗୁଡ଼ିକ ଚଳାଇଛି । ଏ

କଥାକୁ ମୋର ଏକମାତ୍ର ଜବାବ୍ ହେଉଛି ଯେ ସତ୍ୟାଗ୍ରହ ଆବୃତ୍ତ କଠୋର ଉପାଦାନରେ ଗଢ଼ା । ସେଥିରେ ଖାସ୍ ବା ଲୁଚ୍ଛପା କିଛି ନାହିଁ । 'ହିନ୍ଦ୍ ସ୍ୱରାଜ୍ୟ'ରେ ଯେଉଁ ଜୀବନ-ସିଦ୍ଧାନ୍ତ ବର୍ଣ୍ଣିତ ହୋଇଛି, ତାହାର କିୟଦଂଶ ଜୀବନରେ ଆଚରିବା ପାଇଁ ଯେ ଉଦ୍ୟମ ଚାଲିଛି, ଏଥିରେ କୌଣସି ସନ୍ଦେହ ନାହିଁ । ସେହି ଜୀବନ-ସିଦ୍ଧାନ୍ତକୁ ପୂରାପୂରି କାର୍ଯ୍ୟାନ୍ୱିତ କଲେ, ସେଥିରେ କୌଣସି ବିପଦର ସମ୍ଭାବନା ମଧ୍ୟ ନାହିଁ । କିନ୍ତୁ ବର୍ତ୍ତମାନ ଦେଶ ଆଗରେ ଯେଉଁ ସମସ୍ୟା ରହିଛି, ସେ ସମସ୍ୟା ସହିତ ଏ ବହିର ଯେଉଁ ବିଷୟ-ବସ୍ତୁର ଆଦୌ ସମ୍ବନ୍ଧ ନାହିଁ, ସେହି ବିଷୟଗୁଡ଼ିକ ମୋର ଲେଖାରୁ ଉଦ୍ଧାର କରି ଲୋକଙ୍କୁ ଧ୍ୱିତ୍ରସ୍ତ କରିବା ଆଦୌ ସମୀଚୀନ ନୁହେଁ ।

**ମୋହନଦାସ କରମଚନ୍ଦ ଗାନ୍ଧୀ**

—ୟଙ୍ଗ୍ ଇଣ୍ଡିଆ, ଜାନୁଆରି ୧୯୨୧

# ସନ୍ଦେଶ

ଯେଉଁ ସିଦ୍ଧାନ୍ତଗୁଡ଼ିକୁ ସମର୍ଥନ କରିବା ପାଇଁ 'ହିନ୍ଦ୍ ସ୍ୱରାଜ୍ୟ' ଲେଖା ହୋଇଥିଲା, ସେହି ସିଦ୍ଧାନ୍ତଗୁଡ଼ିକୁ ଆପଣ ପ୍ରଚାର କରିବାକୁ ମୁଁ ସ୍ୱାଗତ କରୁଛି । ମୂଳ ବହିଟି ଗୁଜରାଟୀ ଭାଷାରେ ଲେଖା ହୋଇଥିଲା । ଇଂରାଜୀ ସଂସ୍କରଣଟି ଗୁଜରାଟୀରୁ ଅନୁବାଦ କରାଯାଇଛି । ମୋତେ ଯଦି ଆଜି ପୁଣି ଏ ବହିଟିକୁ ଲେଖିବାକୁ ପଡ଼ିବ, ତେବେ କେଉଁଠି କେମିତି ମୁଁ ତାହାର ଭାଷା ବଦଳାଇ ଦେବି । ମାତ୍ର ଏ ବହି ଲେଖି ସାରିବା ପରେ ମୁଁ ଯେଉଁ ତିରିଶ ବର୍ଷ କାଳ ଝଡ଼ଝଞ୍ଜା ଭିତରେ ବିତେଇଛି, ସେଥିରେ ମୋର ବିଚାରକୁ ବଦଳାଇବାର କୌଣସି କାରଣ ମୁଁ ଦେଖିନାହିଁ । ପାଠକ ମନେ ରଖନ୍ତୁ ଯେ କେତେକ କର୍ମୀଙ୍କ ସହିତ ମୋର ଯେଉଁ କଥାବାର୍ତ୍ତା ହୋଇଥିଲା, ତାହାର ଅବିକଳ ବିବରଣୀ ମୁଁ 'ହିନ୍ଦ୍ ସ୍ୱରାଜ୍ୟ'ରେ ଦେଇଛି । ସେମାନଙ୍କ ଭିତରେ ଜଣେ ପ୍ରକାଶ୍ୟ ଅରାଜକତାବାଦୀ ଥିଲେ । ପାଠକ ଏତିକି ମଧ୍ୟ ଜାଣି ରଖନ୍ତୁ ଯେ ଦକ୍ଷିଣ ଆଫ୍ରିକାରେ ରହୁଥିବା କେତେକ ଭାରତୀୟଙ୍କ ମଧ୍ୟରେ ଯେଉଁ ବିକୃତି ପଶିବାକୁ ଯାଉଥିଲା, ଏ ବହି ତାକୁ ଅଟକାଇ ଦେଇଥିଲା । ଏ ବିଚାରକୁ ଓଜନ କରିବା ପାଇଁ ତରାଜୁର ଆର ପାଲିରେ ମୋର ଜଣେ ସ୍ୱର୍ଗୀୟ ବନ୍ଧୁଙ୍କର

ଅଭିମତଟି ରଖିବା ଦରକାର । 'ଜଣେ ମୂର୍ଖ ଏ ବହି ଖଣ୍ଡିକ ଲେଖିଛନ୍ତି' ବୋଲି ସେହି ବନ୍ଧୁ ମତ ବ୍ୟକ୍ତ କରିଥିଲେ ।

ମୋହନଦାସ କରମଚନ୍ଦ ଗାନ୍ଧୀ
ସେଗାଓଁ, ତା ୧୪ ଜୁଲାଇ, ୧୯୩୮

[ ଇଂରାଜୀ ମାସିକ ପତ୍ରିକା ଏରିଆନ୍ ପାଥ ( Aryan Path ) ର ୧୯୩୮ ମସିହା ସେପ୍ଟେମ୍ବର ସଂଖ୍ୟାରେ ପ୍ରକାଶିତ ହିନ୍ଦ୍ ସ୍ୱରାଜ୍ୟ ବିଶେଷାଂକରୁ ଉଦ୍ଧୃତ ]

———

# ପ୍ରସ୍ତାବନା

ଏ ବିଷୟ ଉପରେ ମୁଁ ଯେଉଁ କୋଡ଼ିଏ ଅଧ୍ୟାୟ ଲେଖି-ସାରିଛି, ତାକୁ ପାଠକମାନଙ୍କ ସମ୍ମୁଖରେ ଉପସ୍ଥାପିତ କରିବାକୁ ମୁଁ ସାହସ କରୁଅଛି ।

ଯେତେବେଳେ ମୋଠାରେ ଆଉ କିଛି ବାକି ରହିଲା ନାହିଁ, ସେତେବେଳେ ମୁଁ ଏହା ଲେଖିଲି । ମୁଁ ପଢ଼ିଲି ଓ ବହୁତ ଚିନ୍ତାକଲି । ଟ୍ରାନ୍‌ସଭାଲରୁ ପ୍ରତିନିଧିମାନଙ୍କ ସହ ମୁଁ ବିଲାତରେ ଚାରି ମାସ ରହିଲି । ସେହି ଅବସରରେ ମୁଁ ଅନେକ ଭାରତୀୟଙ୍କ ସହିତ ଆଲୋଚନା କଲି, ଅନେକ ଇଂରେଜଙ୍କ ସହିତ ସାକ୍ଷାତ କଲି । ମୋର ଯେଉଁ ବିଚାର ମୋତେ ଅନ୍ତିମ ବୋଧ ହେଲା, ସେଗୁଡ଼ିକ ପାଠକମାନଙ୍କର ଆଗରେ ଥୋଇବାକୁ ମୁଁ ନିଜର କର୍ତ୍ତବ୍ୟ ମନେକଲି ।

'ଇଣ୍ଡିଆନ୍ ଓପିନିୟନ୍'ର ଗୁଜରାଟି ଗ୍ରାହକ ପ୍ରାୟ ଆଠ ଶହ ହେବେ । ମୋର ଅନୁମାନ ଏହି ପ୍ରତ୍ୟେକ ଗ୍ରାହକଙ୍କ ପଛରେ ଅନ୍ତତଃ ଦଶ ଜଣ ଆଗ୍ରହୀ ଲୋକ ଏହି ପତ୍ରିକା ପଢ଼ୁଛନ୍ତି । ଯେ ଗୁଜୁରାଟି ଭାଷା ଜାଣନ୍ତି ନାହିଁ, ସେମାନେ ଅନ୍ୟଦ୍ୱାରା ଏହାକୁ ପଢ଼ାଇ ନେଉଛନ୍ତି । ଏ ଭାଇମାନେ ଭାରତବର୍ଷର ଅବସ୍ଥା ସମ୍ବନ୍ଧରେ ମୋତେ ଅନେକ ପ୍ରଶ୍ନ କରୁଛନ୍ତି । ବିଲାତରେ ମୋତେ ଏହିପରି ପ୍ରଶ୍ନ ମଧ୍ୟ ହୋଇଥିଲା । ଏଥିପାଇଁ ମୋତେ ବୋଧ ହେଲା ଯେ ଯେଉଁ ବିଚାରଗୁଡ଼ିକ ମୁଁ ବ୍ୟକ୍ତିଗତ ଭାବରେ କହିଛି,

ସେଗୁଡ଼ିକୁ ସମସ୍ତଙ୍କର ସାମନାରେ ଥୋଇଦେବା ଭୁଲ ହେବ ନାହିଁ ।

ଏଠାରେ ମୁଁ ଯେଉଁ ବିଷୟର ବ୍ୟକ୍ତ କରିଛି, ତାହା ମୋର ନିଜର ଅଟେ ଏବଂ ମୋର ମଧ୍ୟ ନୁହେଁ । ସେଗୁଡ଼ିକ ମୋର ନିଜର, କାରଣ ତଦନୁସାରେ ମୁଁ ଜୀବନ ବିତାଇବାକୁ ଇଚ୍ଛା କରୁଛି, ଏବଂ ସେଗୁଡ଼ିକ ମୋର ଆତ୍ମା ସହ ଓତଃପ୍ରୋତଃ ହୋଇଯାଇଛି । ସେଗୁଡ଼ିକ ପୁଣି ମୋର ନୁହେଁ, କାରଣ କେବଳ ମୁଁ ସେସବୁ ଚିନ୍ତା କରିଛି—ଏପରି ନୁହେଁ । କେତେକ ବହି ମୁଁ ପଢ଼ିସାରିବା ପରେ ସେ ବିଷୟର ଗଢ଼ି ଉଠିଛି । ମୋର ଅନ୍ତରରେ ମୁଁ ଯାହା ଉପଲବ୍ଧି କରୁଥିଲି, ବହିରେ ତାହାର ସମର୍ଥନ ପାଇଲି ।

ଯେଉଁ ଭାରତବର୍ଷ ଉପରେ ପାଶ୍ଚାତ୍ୟ ସଂସ୍କାରର ପ୍ରଭାବ ପଡ଼ିନାହିଁ, ସେହି ଦେଶର ଅଧିକାଂଶ ଅଧିବାସୀଙ୍କର ବିଷୟର ଏହା ହିଁ ଅଟେ । ମୋର ଏ ଉକ୍ତିକୁ ପ୍ରମାଣ କରିବାର ଆବଶ୍ୟକତା ନାହିଁ । କିନ୍ତୁ ଏ ବିଷୟର ଇଉରୋପର ହଜାର ହଜାର ଲୋକଙ୍କର ବିଷୟର—ଏ କଥା ମୋର ପ୍ରମାଣ ଦ୍ୱାରା ପାଠକମାନଙ୍କ ମନରେ ଉଦ୍ରେକ କରିବାକୁ ଚାହେଁ । ଯେ ଏହା ଅନୁସନ୍ଧାନ କରିବାକୁ ଚାହାନ୍ତି ଏବଂ ଯାହାଙ୍କର ଫୁରସତ ଅଛି, ସେ ଉକ୍ତ ପୁସ୍ତକଗୁଡ଼ିକ ଦେଖିପାରନ୍ତି । ନିଜର ଅବସର ଦେଖି, ସେହି ପୁସ୍ତକଗୁଡ଼ିକରୁ କିଛି ନା କିଛି ପାଠକମାନଙ୍କର ଆଗରେ ଉପସ୍ଥାପିତ କରିବା ମୋର ଅଭିପ୍ରାୟ ଅଟେ ।

'ଇଣ୍ଡିଆନ୍ ଓପିନିୟନ୍'ର ପାଠକମାନଙ୍କର କିମ୍ବା ଅନ୍ୟମାନଙ୍କର ମନରେ ମୋର ଲେଖା ପଢ଼ି ଯେଉଁ ବିଷୟର

ଆସିବ, ସେଗୁଡ଼ିକୁ ଯଦି ସେମାନେ ମୋତେ ଜଣାଇବେ, ତେବେ ମୁଁ ସେମାନଙ୍କଠାରେ କୃତଜ୍ଞ ହେବି ।

ଉଦ୍ଦେଶ୍ୟ ହେଉଛି, କେବଳ ଦେଶ-ସେବା ଓ ସତ୍ୟର ସନ୍ଧାନ ଏବଂ ତଦନୁସାରେ ଜୀବନଯାପନ କରିବା । ମାତ୍ର ଯଦି ମୋର ବିଚାର ଭ୍ରମପୂର୍ଣ୍ଣ ପ୍ରମାଣିତ ହେବ, ତେବେ ତାକୁ ଜାବୁଡ଼ି ଧରିବା ମୋର ଆଗ୍ରହ ନୁହେଁ । ଯଦି ସେଗୁଡ଼ିକ ସତ ପ୍ରମାଣିତ ହୁଏ ତେବେ ଅନ୍ୟ ଲୋକେ ମଧ୍ୟ ସେହି ଅନୁସାରେ ଜୀବନଯାପନ କରନ୍ତୁ—ଦେଶର ମଙ୍ଗଳ ପାଇଁ ସାଧାରଣ ଭାବରେ ମୋର ଏହା ଇଚ୍ଛା ଅଟେ ।

ଲେଖାର ସୁବିଧା ପାଇଁ ପାଠକ ଓ ସଂପାଦକଙ୍କ ମଧ୍ୟରେ ସମ୍ବାଦ ରୂପରେ ପ୍ରବନ୍ଧଗୁଡିକ ଦିଆଯାଇଛି ।

ମୋହନଦାସ କରମଚାନ୍ଦ ଗାଂଧୀ
କିଲ୍ ଡୋନାନ୍ କ୍ୟାସ୍‌ଲ୍
ତା ୨୨ । ୧୧ । ୧୯୦୯

———

# କଂଗ୍ରେସ ଓ କଂଗ୍ରେସର ହର୍ତ୍ତା-କର୍ତ୍ତା

ପାଠକ—ଆଜକାଲି ଭାରତବର୍ଷରେ 'ହୋମରୁଲ' ବାଆ ବହୁଛି । ଭାରତବାସୀ ରାଷ୍ଟ୍ରୀୟ ସ୍ୱାଧୀନତା ପାଇବା ପାଇଁ ଝୁରି ହେଉଛନ୍ତି । ଦକ୍ଷିଣ ଆଫ୍ରିକାରେ ମଧ୍ୟ ସେହି ଉତ୍ସାହ-ଉତ୍ତେଜନା ଆଖିରେ ପଡ଼ୁଛି । ଭାରତବାସୀ ନିଜ ଅଧିକାର ହାସଲ କରିବା ପାଇଁ ଉତ୍ସୁକ ଥିବା ଜଣାଯାଉଛି । ଏ ବିଷୟରେ ଆପଣଙ୍କର ମତ କ'ଣ କହିବେ କି ?

ସଂପାଦକ—ଆପଣ ଠିକ୍ ପ୍ରଶ୍ନ କରିଛନ୍ତି । କିନ୍ତୁ ତା'ର ଉତ୍ତର ଦେବା ସହଜ ନୁହେଁ । ଖବରକାଗଜର ଗୋଟିଏ ଉଦ୍ଦେଶ୍ୟ ହେଉଛି ଲୋକଙ୍କର ମନୋଭାବ ଜାଣିବା ଓ ତାକୁ ପ୍ରକାଶ କରିବା; ଦ୍ୱିତୀୟ ଉଦ୍ଦେଶ୍ୟ ହେଉଛି ଲୋକଙ୍କ ମଧ୍ୟରେ କେତେକ ବାଞ୍ଛନୀୟ ବିଚାର ଜାଗ୍ରତ କରିବା ଏବଂ ତୃତୀୟଟି ହେଉଛି ଲୋକସାଧାରଣଙ୍କ ମଧ୍ୟରେ କୌଣସି ଦୋଷ ଥିଲେ, ଯେତେ ହାଇରାଣ ହେବାକୁ ପଡ଼ୁ ପଛକେ, ସେ ଦୋଷକୁ ନିଃସଂକୋଚରେ ସେମାନଙ୍କୁ ଦେଖାଇ ଦେବା । ଆପଣଙ୍କ ପ୍ରଶ୍ନର ଜବାବ ଦେବାରେ ଏ ତିନୋଟି ଯାକ ଏକା ସଙ୍ଗରେ ସଂଶ୍ଳିଷ୍ଟ । ଲୋକଙ୍କର ଅଭିପ୍ସା ବା ମନୋଭାବକୁ କେତେକ ପରିମାଣରେ ପ୍ରକାଶ କରିବାକୁ ହେବ, ଏବଂ ଯେଉଁ ଭାବନା ଲୋକଙ୍କ ମଧ୍ୟରେ ନାହିଁ, ସେ ଭାବନା ସେମାନଙ୍କ ମଧ୍ୟରେ ଜନ୍ମାଇବାପାଇଁ ଉଦ୍ୟମ

କରିବାକୁ ହେବ ଏବଂ ସେମାନଙ୍କ ଦୋଷଗୁଡ଼ିକ ଦେଖାଇ ଦେବାକୁ ଓ ନିନ୍ଦା ମଧ୍ୟ କରିବାକୁ ପଡ଼ିବ । ତଥାପି ଆପଣ ପ୍ରଶ୍ନ କରିଥିବାରୁ ତାହାର ଉତ୍ତର ଦେବା ମୋର କର୍ତ୍ତବ୍ୟ ମଣୁଛି ।

ପାଠକ—ଆମ୍ଭମାନଙ୍କ ମଧ୍ୟରେ 'ହୋମରୁଲ୍' (ସ୍ୱରାଜ୍ୟ) ପାଇଁ ଆକାଂକ୍ଷା ଜନ୍ମିଲାଣି ବୋଲି ଆପଣ ଲକ୍ଷ୍ୟ କରୁଛନ୍ତି କି ?

ସଂପାଦକ—ସେହି ଆକାଂକ୍ଷା ତ ଜାତୀୟ କଂଗ୍ରେସକୁ ଜନ୍ମ ଦେଇଛି । ନ୍ୟାଶନାଲ୍ ବା ଜାତୀୟ ଶବ୍ଦର ଅର୍ଥ ହିଁ ତାହା ପ୍ରକଟ କରୁଛି ।

ପାଠକ—ଆପଣଙ୍କ କଥା ଠିକ୍ ନୁହେଁ । ତରୁଣ ଭାରତୀୟ-ମାନେ ଆଜିକାଲି କଂଗ୍ରେସକୁ ଖାତିର କରୁ ନାହାନ୍ତି । ସେମାନଙ୍କ ବିଚାରରେ ଭାରତରେ ଇଂରେଜ ଶାସନକୁ ଚିରସ୍ଥାୟୀ କରି ରଖିବାର କଂଗ୍ରେସ ଗୋଟିଏ ଆୟୁଧ ମାତ୍ର ।

ସଂପାଦକ—ତରୁଣ ସମାଜର ଏ ପ୍ରକାର ଧାରଣା ଯଥାର୍ଥ ନୁହେଁ । ଭାରତର କୁଳବୃଦ୍ଧ ଦାଦାଭାଇ ନୌରୋଜୀ କ୍ଷେତ୍ର ପ୍ରସ୍ତୁତ କରି ନ ଥିଲେ ତରୁଣ ସମାଜ ଆଜି ଯେଉଁ କଥାମାନ କହୁଛନ୍ତି, ସେତିକ ସୁଦ୍ଧା କହିପାରୁ ନ ଥାନ୍ତେ । କଂଗ୍ରେସର ଉଦ୍ଦେଶ୍ୟ-ପୂରଣ ପାଇ ମିଷ୍ଟର ହ୍ୟୁମ ଯାହା ଲେଖିଛନ୍ତି, ଆମକୁ କର୍ମତତ୍ପର କରିବା ପାଇଁ ଯେଉଁ ଭର୍ତ୍ସନା କରିଛନ୍ତି, ଯେଉଁ ଯତ୍ନ କରି ସେ ଆମର ଜାଗରଣ ଆଣିଲେ, ତାକୁ ଆମେ କିପରି ପାଶୋରି ପାରିବୁ ? ସାର୍ ଉଇଲିଅମ୍ ୱେଡରବର୍ଣ୍ଣ ସେହି ଲକ୍ଷ୍ୟ-ସିଦ୍ଧି ପାଇଁ ନିଜର ଧନଜୀବନ ଉତ୍ସର୍ଗ କରି ଦେଇଛନ୍ତି । ଇଂରେଜ ରାଜତ୍ୱ ସମ୍ବନ୍ଧରେ ସେ ଯେଉଁ ପ୍ରବନ୍ଧମାନ ଲେଖିଛନ୍ତି, ସେଗୁଡ଼ିକ ଆଜିସୁଦ୍ଧା ପ୍ରଣିଧାନଯୋଗ୍ୟ ହୋଇ ରହିଛି । ଅଧ୍ୟାପକ ଗୋଖଲେ

ରାଷ୍ଟ୍ରକୁ ପ୍ରସ୍ତୁତ କରିବା ଉଦ୍ଦେଶ୍ୟରେ ଦାରିଦ୍ର୍ୟ ବରଣ କରି ନିଜ ଜୀବନର କୋଡ଼ିଏ ବର୍ଷ କାଳ ନିୟୋଜିତ କରିଥିଲେ । ଆଜି ମଧ୍ୟ ସେ ଦରିଦ୍ର ଭାବରେ ଜୀବନଯାପନ କରୁଛନ୍ତି । କଂଗ୍ରେସ ଜରିଆରେ ଯେଉଁମାନେ ହୋମ୍‌ରୁଲର ବୀଜ ବୁଣିଥିଲେ, ସେମାନଙ୍କ ଭିତରେ ସ୍ୱର୍ଗୀୟ ନ୍ୟାୟାଧୀଶ ବଦ୍‌ରୁଦ୍ଦିନ୍ ମଧ୍ୟ ଜଣେ । ଏହିରୂପେ ବଙ୍ଗଳା, ମାନ୍ଦ୍ରାଜ, ପଞ୍ଜାବ ଓ ଅନ୍ୟାନ୍ୟ ସ୍ଥାନରେ ଭାରତର କଲ୍ୟାଣକାମୀ ବହୁ ଭାରତୀୟ ଓ ଇଂରେଜ କଂଗ୍ରେସ-ମେମ୍ବର ଅଛନ୍ତି ।

ପାଠକ—ରହନ୍ତୁ, ରହନ୍ତୁ । ଆପଣ ତ ମୋ ପ୍ରଶ୍ନର ବହୁତ ଆଗକୁ ମାଡ଼ିଗଲେ । ହୋମ୍‌ରୁଲ୍ ବା ସ୍ୱାୟତ୍ତ-ଶାସନ ବିଷୟରେ ମୁଁ ଆପଣଙ୍କୁ ପଚାରିଥିଲି; ଆପଣ ବିଦେଶୀ ଶାସନ କଥା ଆଲୋଚନା କରୁଛନ୍ତି । ମୁଁ ଇଂରେଜଙ୍କ ନାମ ଲୋଡ଼ୁ ନାହିଁ, ଅଥଚ ଆପଣ ଇଂରେଜଙ୍କ ନାମ ଶୁଣାଉଛନ୍ତି । ଏପରି ଅବସ୍ଥାରେ ଆମର କଥାବାର୍ତ୍ତା ଗୁଳିପାରିବ ବୋଲି ତ ମନେ ହେଉ ନାହିଁ । ଯଦି ଆପଣ କେବଳ ହୋମ୍‌ରୁଲ୍‌ରେ ଆପଣଙ୍କର ଆଲୋଚନାକୁ ସୀମାବଦ୍ଧ ରଖନ୍ତୁ, ତେବେ ମୁଁ ଆନନ୍ଦିତ ହେବି । ଆଉ ଅନ୍ୟ ମିଠା ପିଆଣିଆ କଥାରେ ମୋ ମନ ମାନିବ ନାହିଁ ।

ସମ୍ପାଦକ—ଆପଣ ଅଧୀର ହୋଇ ପଡ଼ିଲେଣି । ମୁଁ ଅଧୀର ହୋଇ ପାରିବି ନାହିଁ । ଆପଣ ଟିକିଏ ଧୈର୍ଯ୍ୟ ଧରିଲେ, ଯାହା ଚାହୁଁଛନ୍ତି ତାହା ପାଇବେ । ଏକା ଦିନକେ ଧାନ ପାଚେ ନାହିଁ ବୋଲି ଯେ ଗୋଟିଏ ପୁରୁଣା କଥା ଅଛି, ସେଇଟା ଟିକିଏ ମନେ କରନ୍ତୁ । ଆପଣ ମୋତେ କୁହାଇ ଦେଲେ ନାହିଁ ଏବଂ ଭାରତବର୍ଷର ଉପକାର କରିଥିବା ଲୋକଙ୍କ କଥା ସୁଦ୍ଧା ଶୁଣିବାକୁ ଆପଣଙ୍କୁ ସୁଖ ଲାଗୁନାହିଁ, ସେଇଥିରୁ ଜଣାଯାଉଛି ଯେ ସ୍ୱରାଜ୍ୟ

ଆପଣଙ୍କ ପାଇଁ ବହୁତ ଦୂରରେ ଅଛି । ଭାରତରେ ଯଦି ଆପଣଙ୍କ ପରି ଲୋକ ବହୁ ସଂଖ୍ୟାରେ ଥିବେ, ତେବେ ଆମେ ଯେ ସ୍ୱରାଜ ଦିଗରେ ଆଗେଇ ପାରିବୁ ନାହିଁ, ଏ କଥାଟା ଠିକଏ ଭାବିବା ଦରକାର ।

ପାଠକ—ମୋର ତ ମନେ ହେଉଛି ଏପରି ଘୂରେଇ ଫିରେଇ କଥା କହି ଆପଣ ମୋ ପ୍ରଶ୍ନର ଉତ୍ତରକୁ ଟାଳି ଦେବାକୁ ଚାହୁଁଛନ୍ତି । ଆପଣ ଯେଉଁମାନଙ୍କୁ ଭାରତର ମଙ୍ଗଳକାମୀ ମଣୁଛନ୍ତି, ମୁଁ ସେମାନଙ୍କୁ ସେପରି ମନେ କରୁନାହିଁ । ତେଣୁ ସେପରି ଲୋକଙ୍କର ଉପକାର କଥା ମୁଁ କାହିଁକି ଶୁଣିବି ? ଆପଣ ଯାହାଙ୍କୁ ଭାରତର କୁଳବୃଦ୍ଧ କହୁଛନ୍ତି, ସେ କି ଉପକାର କରିଛନ୍ତି ? ସେ ତ କହୁଛନ୍ତି ଇଂରେଜ ଶାସନକର୍ତ୍ତା ନ୍ୟାୟ ଦେବେ ଏବଂ ସେମାନଙ୍କ ସହିତ ମିଳିମିଶି ରହିବା ଆମ୍ଭମାନଙ୍କର ଉଚିତ ।

ସମ୍ପାଦକ—ମୋତେ ନମ୍ରତାର ସହିତ ଏତିକି କହିବାକୁ ପଡ଼ିବ ଯେ ତାଙ୍କ ସମ୍ବନ୍ଧରେ ଆପଣଙ୍କର ଏ ଅସମ୍ମାନଜନକ ଉକ୍ତି ଆମ ପକ୍ଷରେ ଅତ୍ୟନ୍ତ ଲଜ୍ଜା ଜନକ ଅଟେ । ଆପଣ ତାଙ୍କ କାମଗୁଡ଼ିକ ଦେଖନ୍ତୁ । ସେ ଭାରତବର୍ଷ ପାଇଁ ତାଙ୍କର ଜୀବନ ଉତ୍ସର୍ଗ କରି ଦେଇଛନ୍ତି । ଏ ଶିକ୍ଷା ଆମେ ତାଙ୍କର ଠାରୁ ପାଇଛୁଁ । ଭାରତବାସୀମାନଙ୍କର କଲିଜାର ରକ୍ତ ଯେ ଇଂରେଜମାନେ ଶୋଷି ନେଇଛନ୍ତି, ଏ କଥାଟି ମାନ୍ୟବର ଦାଦାଭାଇ ଆମକୁ ଶିଖାଇଛନ୍ତି । ବର୍ତ୍ତମାନ ସୁଦ୍ଧା ଇଂରେଜଙ୍କ ଉପରେ ତାଙ୍କର ଭରସା ଥିଲେ କଅଣ ହେଲା ? ଆମେ ଯୌବନର ଆବେଗରେ ପାଦେ ଆଗକୁ ମାଡ଼ି ଯାଉଛୁ ବୋଲି କଅଣ ଦାଦାଭାଇ ଊଣା ପୂଜ୍ୟ ହୋଇଯିବେ ? ଏତିକରେ କଅଣ ଆମେ ଅଧିକ ଜ୍ଞାନୀ ହୋଇଗଲୁଁ । ସିଡ଼ିର ଯେଉଁ ପାହାରେ ଗୋଡ଼

ଦେଇ ଆମେ ଉପରକୁ ଚଢ଼ିଲୁଁ, ସେହି ଫଳକୁ ଗୋଇଠା ନ ମାରିବା ହିଁ ବୁଦ୍ଧିମତ୍ତାର ପରିଚୟସୂଚକ । ସିଡ଼ିରୁ ଗୋଟିଏ ଫଳ କାଢ଼ି ପକେଇଲେ ଯେ ଗୋଟାକଯାକ ସିଡ଼ି ଭାଙ୍ଗିଯିବ, ଏ କଥାଟି ମନେ ରଖିବା ଉଚିତ । ଆମେ ବାଲ୍ୟାବସ୍ଥା ଅତିକ୍ରମ କରି ଯୌବନରେ ପଦାର୍ପଣ କଲେ ସୁଦ୍ଧା ବାଲ୍ୟାବସ୍ଥାକୁ ତ ଘୃଣା କରୁନା । ବରଂ ସେ ଦିନଗୁଡ଼ିକୁ ଆଦରରେ ମନେ ପକାଉ । ମୋତେ ଯଦି କେହି ବହୁବର୍ଷ ପଢ଼ାଇବା ଫଳରେ ମୋର ଜ୍ଞାନ ଟିକିଏ ବଢ଼ିଗଲା, ତେବେ ସେଥିଯୋଗୁଁ ମୁଁ ତାଙ୍କଠାରୁ ନିଜକୁ ବଡ଼ ଜ୍ଞାନୀ ବୋଲେଇବି ନାହିଁ । ସେ ସର୍ବଦା ମୋର ସମ୍ମାନାର୍ହ । ଭାରତର କୁଳବୃଦ୍ଧଙ୍କ ସଂବନ୍ଧରେ ଏହା ହିଁ ବୁଝିବା ଉଚିତ । ତାଙ୍କ ପଛରେ ଯେ ସମୁଦାୟ ଭାରତର ଜନତା ରହିଛନ୍ତି ଆମକୁ ତାହା ମାନିବାକୁ ପଡ଼ିବ । ସେ ରାଷ୍ଟ୍ରୀୟ ଭାବନାର ବା ସ୍ୱଦେଶ ପ୍ରେମର ଯେ ସ୍ରଷ୍ଟା, ଏହା ଆମକୁ ସ୍ୱୀକାର କରିବାକୁ ହେବ ।

ପାଠକ—ଏ କଥାଟି ଆପଣ ଠିକ୍ କହିଲେ । ଦାଦାଭାଇ ନୌରୋଜୀଙ୍କୁ ଯେ ସମ୍ମାନ ଦେଖାଇବା ଉଚିତ, ଏ କଥା ମୁଁ ବୁଝି ପାରୁଛି । ସେ ଓ ତାଙ୍କ ଦଳ ଯେଉଁମାନେ କାମ କରି ଯାଇଛନ୍ତି ସେମାନେ ତାହା କରି ନ ଥିଲେ ଆଜି ଆମେ ଏ ଉଦ୍ଦୀପନା ଅନୁଭବ କରିପାରୁ ନ ଥାନ୍ତୁ । କିନ୍ତୁ ଅଧ୍ୟାପକ ଗୋଖ୍‌ଲେଙ୍କ ସମ୍ବନ୍ଧରେ ଏହା କହିବୁଁ କିପରି ? ସେ ତ ଇଂରେଜଙ୍କର ପରମବନ୍ଧୁ ପାଲଟି ଯାଇଛନ୍ତି । ସେ କହୁଛନ୍ତି—ଇଂରେଜ-ମାନଙ୍କଠାରୁ ଆମର ବହୁତ କଥା ଶିଖିବାକୁ ଅଛି । ଆମେ ସ୍ୱରାଜ୍ୟ କଥା କହିବା ପୂର୍ବରୁ ସେମାନଙ୍କଠାରୁ ସେମାନଙ୍କର ରାଜନୀତି ଶିକ୍ଷା କରିବା ଆମର ଉଚିତ । ସେ ମହାଶୟଙ୍କ ବକ୍ତୃତାରୁ ମୋ ମନ ଉଠିକୁ ଗଲାଣି ।

ସଂପାଦକ—ଆପଣଙ୍କ ମନ ଉଠୁଛି ଯିବାଟା ଆପଣଙ୍କର ଅଧିରତାର ପରିଚୟ ଦେଉଛି । ଯେଉଁ ଯୁବକମାନେ ସେମାନଙ୍କ ବାପ ମାଆଙ୍କ ମନ୍ଥରତା ଦେଖି ବିରକ୍ତ ହୁଅନ୍ତି ଓ ବାପ ମାଆ ସେମାନଙ୍କ ସହିତ ଦ୍ରୁତ ଗତିରେ ଆଗେଇ ପାରୁନାହାନ୍ତି ବୋଲି ରାଗି ଯାଆନ୍ତି, ମୋ ବିଶ୍ବାସରେ ସେମାନେ ନିଜ ବାପ ମାଆଙ୍କୁ ଅସମ୍ମାନ କରନ୍ତି । ଅଧ୍ୟାପକ ଗୋଖଲେ ଆମର ପିତୃ ସ୍ଥାନୀୟ । ସେ ଆମ ସାଙ୍ଗରେ ଦଉଡ଼ି ନ ପାରିଲେ ତ କଅଣ ହୋଇଗଲା ? ଯେଉଁ ରାଷ୍ଟ୍ରର ପ୍ରଜା ସ୍ୱରାଜ୍ୟ ଅର୍ଜନ କରିବାକୁ ଚାହେଁ, ତା ପକ୍ଷରେ ନିଜର ଗୁରୁଜନମାନଙ୍କୁ ଅପମାନ କରିବା ଶୋଭା ପାଏ ନାହିଁ । ଆମମାନଙ୍କଠାରେ ବୟୋବୃଦ୍ଧମାନଙ୍କୁ ସମ୍ମାନ ଦେଖାଇବାର ଅଭାବ ଆମକୁ ଅପଦାର୍ଥ କରିଦେବ । ପରିପକ୍ୱ ବିଶ୍ୱାସସମ୍ପନ୍ନ ଲୋକେ ହିଁ ନିଜକୁ ଶାସନ କରିପାରନ୍ତି । ଅସଂଯତ ଲୋକ ତାହା ପାରନ୍ତି ନାହିଁ । ପୁଣି ଅଧ୍ୟାପକ ଗୋଖଲେ ଭାରତର ଶିକ୍ଷା ପାଇଁ ଯେପରି ତ୍ୟାଗ କରିଛନ୍ତି, ଆଜି କେତେଜଣ ଭାରତୀୟ ସେପରି ତ୍ୟାଗ କରି ପାରିଛନ୍ତି ? ମୋର ଦୃଢ଼ ବିଶ୍ୱାସ, ଅଧ୍ୟାପକ ଗୋଖଲେ ଯେଉଁ କାମ କରନ୍ତି, ସେ ସବୁ କାମ ଶୁଦ୍ଧ ଭାବରେ ଭାରତର ହିତ ମାନସିକ କରନ୍ତି । ତାଙ୍କର ଭାରତ-ପ୍ରୀତି ଏତେ ପ୍ରବଳ ଯେ ଭାରତବର୍ଷ ପାଇଁ ଯଦି ତାଙ୍କୁ ନିଜର ପ୍ରାଣ ଦେବାକୁ ପଡ଼ିବ, ତେବେ ସେ ତାହା କରିବେ । ସେ ଯାହା କହନ୍ତି, ସେ କଥା କାହାରିକୁ ତୋଷାମଦ କରିବା ପାଇଁ କହନ୍ତି ନାହିଁ । ସେ ଯାହା ଠିକ୍ ମନେକରନ୍ତି, ତାହାହିଁ କହନ୍ତି । ସେଥିପାଇଁ ତାଙ୍କୁ ଭକ୍ତି କରିବା ଆମର ଉଚିତ ।

ପାଠକ—ତାହାହେଲେ କଅଣ ପ୍ରତି ବିଷୟରେ ଆମେ ତାଙ୍କୁ ଅନୁସରଣ କରିବା ଉଚିତ ?

ସଂପାଦକ—ମୁଁ ସେପରି କଥା କହୁ ନାହିଁ । ଆମେ ଯଦି ବିବେକ ପୂର୍ବକ ତାଙ୍କଠାରୁ ଭିନ୍ନ ମତ ପୋଷଣ କରିବୁ, ତେବେ ଅଧ୍ୟାପକ ଗୋଖଲେ ମଧ୍ୟ ଆମକୁ ନିଜ ବିବେକ ଅନୁସାରେ କାର୍ଯ୍ୟ କରିବା ପାଇଁ ପରାମର୍ଶ ଦେବେ । ମାତ୍ର ଆମର ମୁଖ୍ୟ ଉଦ୍ଦେଶ୍ୟ ହେଉଛି, ଆମେ ତାଙ୍କ କାମକୁ ନିନ୍ଦା କରିବୁ ନାହିଁ, ତାଙ୍କୁ ଆମଠାରୁ ଶ୍ରେଷ୍ଠ ମଣିବୁ ଓ ସର୍ବଦା ମନେ ରଖିବୁ ଯେ ସେ ଭାରତବର୍ଷ ପାଇଁ ଯାହା କରିଛନ୍ତି, ତାହା ତୁଳନାରେ ଆମେ କିଛି କରିନାହୁଁ । ପୁଣି ତାଙ୍କୁ ଅସମ୍ମାନ ଦେଖାଇ କେତେକ ଖବର-କାଗଜରେ ଯେଉଁ ଲେଖାମାନ ବାହାରୁଛି, ତାହାର ପ୍ରତିବାଦ କରିବା ମଧ୍ୟ ଆମର କର୍ତ୍ତବ୍ୟ । ଅଧ୍ୟାପକ ଗୋଖଲେଙ୍କ ପରି ବ୍ୟକ୍ତିମାନଙ୍କୁ ତ ସ୍ୱରାଜ୍ୟର ସ୍ତମ୍ଭ ମନେ କରିବା ଆମର ଉଚିତ । କେବଳ ଆମରି ବିଚାରଟି ଠିକ୍ ଓ ଆଉ ସମସ୍ତଙ୍କ ବିଚାର ଭୁଲ ଏବଂ ଯେଉଁମାନେ ଆମ ବିଚାର ଅନୁସାରେ ଚଳୁ ନାହାନ୍ତି, ସେମାନେ ଦେଶର ଶତ୍ରୁ ବୋଲି ଭାବିବାଟା ମନ୍ଦ ଅଭ୍ୟାସ ।

ପାଠକ—ଆପଣଙ୍କ କଥା ବର୍ତ୍ତମାନ ମୁଁ ଟିକିଏ ଟିକିଏ ବୁଝି ପାରୁଛି । ତଥାପି ମୋତେ ସେ ବିଷୟରେ ଚିନ୍ତା କରିବାକୁ ପଡ଼ିବ । କିନ୍ତୁ ମିଷ୍ଟର୍ ହ୍ୟୁମ୍ ଓ ମିଷ୍ଟର ୱେଡ଼ର୍‌ବର୍ଣ୍ଣଙ୍କ ସମ୍ବନ୍ଧରେ ଆପଣ ଯାହା କହିଲେ, ସେ ସବୁ ମୋର ବୋଧଗମ୍ୟ ହେଲା ନାହିଁ ।

ସଂପାଦକ—ଯେଉଁ କଥାଟି ଭାରତୀୟଙ୍କ ପ୍ରତି ଖଟିବ, ସେ କଥା ଯେ ଇଂରେଜମାନଙ୍କ ପ୍ରତି ମଧ୍ୟ ପ୍ରଯୁଜ୍ୟ ହେବା ଉଚିତ, ଏହା ବୁଝିବା ଦରକାର ସବୁ ଇଂରେଜ ଖରାପ, ଏ କଥାରେ ମୁଁ ଏକମତ ହୋଇ ପାରିବି ନାହିଁ । ଭାରତକୁ ସ୍ୱରାଜ୍ୟ ମିଳୁ, ଏହା

ଅନେକ ଇଂରେଜଙ୍କର ଇଚ୍ଛା । ଇଂରେଜ ଲୋକ ଯେ ଅନ୍ୟ-ମାନଙ୍କଠାରୁ ଅଧିକ ସ୍ୱାର୍ଥପର, ତାହା ଠିକ୍ ମାତ୍ର ପ୍ରତ୍ୟେକ ଇଂରେଜ ଖରାପ ବୋଲି ଏ କଥାରୁ ପ୍ରମାଣିତ ହେଉନାହିଁ । ଆମେ ନ୍ୟାୟ ଚାହୁଁ, ତେଣୁ ଆମକୁ ମଧ୍ୟ ସମସ୍ତଙ୍କ ସହିତ ନ୍ୟାୟ ଆଚରଣ କରିବାକୁ ପଡ଼ିବ । ସାର୍ ଉଇଲିଅମ ଯେ ଭାରତବର୍ଷର ଅମଙ୍ଗଳ କାମନା କରନ୍ତି ନାହିଁ, ସେତିକ ଆମ ପାଇଁ ଯଥେଷ୍ଟ । ଆମେ ଯେତେ ଅଗ୍ରସର ହେବା, ଆପଣ ସେତେ ବେଶୀ ଦେଖିବେ ଯେ ଆମେ ଯଦି ନ୍ୟାୟସଙ୍ଗତ ଭାବରେ କାମ କରିବା, ତେବେ ଭାରତ ଶୀଘ୍ର ସ୍ୱାଧୀନ ହେବ । ଆପଣ ଏ କଥା ମଧ୍ୟ ଦେଖିବେ ଯେ ଆମେ ଯଦି ସବୁ ଇଂରେଜକୁ ଆମର ଶତ୍ରୁ ମଣି ସମସ୍ତଙ୍କୁ ପରିତ୍ୟାଗ କରୁଁ, ତେବେ ତାହାର ସ୍ୱରାଜ୍ୟ ବେଶୀ ଦୂରେଇ ଯିବ । କିନ୍ତୁ ଆମେ ଯଦି ସେମାନଙ୍କ ସହିତ ନ୍ୟାୟୋଚିତ ଆଚରଣ କରିବା, ତେବେ ସ୍ୱରାଜ୍ୟ ହାସଲ କରିବା ପାଇଁ ଆମକୁ ସେମାନେ ସାହାଯ୍ୟ କରିବେ ।

ପାଠକ—ମୋତେ ଏ କଥାଗୁଡ଼ାକ ବର୍ତ୍ତମାନ ନିରର୍ଥକ ଜଣା ପଡ଼ୁଛି । ଇଂରେଜ ସାହାଯ୍ୟ ମିଳିବ ଓ ତାହାର ସ୍ୱରାଜ୍ୟ ମିଳିଯିବ ବୋଲି ଯେ ଆପଣ କହିଲେ ଏ ଦୁଇଟା ଯାକ କଥା ପରସ୍ପର ବିରୋଧୀ ହୋଇଯାଉଛି । ଆମେ ହୋମ୍‌ରୁଲ୍ ଚାହିଁବାକୁ ଇଂରେଜ ଲୋକେ କେତେବେଳେ ସହିବେ ? ମାତ୍ର ମୁଁ ବର୍ତ୍ତମାନ ସେ ପ୍ରଶ୍ନର ଉତ୍ତର ଚାହୁଁ ନାହିଁ । ସେ କଥା ପାଇଁ ସମୟ ଦେବାରେ କିଛି ଲାଭ ନାହିଁ । ସ୍ୱରାଜ୍ୟ କିପରି ମିଳିବ, ସେହି କଥାଟା ଯେତେବେଳେ ଆପଣ କହିବେ, ସେତେବେଳେ ଯାଇ ମୁଁ ଆପଣଙ୍କ ବିଚାରର ବୁଝିପାରିବି । ବର୍ତ୍ତମାନ ତ ଆପଣ ଏ ଯେଉଁ ଇଂରେଜଙ୍କ ସାହାଯ୍ୟ କଥାଟି କହିଲେଣି, ସେ କଥାରେ ମୁଁ

ଆପଣଙ୍କ ବିଷୟରେ ମନ୍ଦ ଧାରଣା କରିସାରିଲଣି ଓ ମୋ ମନ ଆପଣଙ୍କ ବିରୁଦ୍ଧ-ବିରୋଧୀ ହେବାକୁ ବସିଲଣି । ତେଣୁ ସେ କଥା ଆପଣ ଆଜି ନ କହିଲେ ଭଲ ହେବ ।

ସଂପାଦକ—ମୁଁ ଇଂରେଜଙ୍କ କଥା ଆଜି କହିବାକୁ ଚାହୁଁ ନାହିଁ । ଆପଣ ଯେ ମୋ ବିଷୟରେ ଭୁଲ ଧାରଣା କରିଛନ୍ତି, ସେଥିପାଇଁ ମୋର ଆଦୌ ଚିନ୍ତା ନାହିଁ । ମୁଖ୍ୟତଃ ଯେଉଁ ଗୁରୁତ୍ୱପୂର୍ଣ୍ଣ ଓ ଅପ୍ରୀତିକର କଥା ମୋର କହିବାକୁ ଅଛି ତାହା ଆରମ୍ଭରେ କହିଦେବା ଭଲ । ମୋ ସମ୍ବନ୍ଧରେ ଆପଣଙ୍କ ଭ୍ରାନ୍ତ ଧାରଣାକୁ ଧୈର୍ଯ୍ୟ ସହକାରେ ଦୂର କରିବା ହିଁ ମୋର କର୍ତ୍ତବ୍ୟ ।

ପାଠକ—ଆପଣଙ୍କର ଏକଥାଟି ମୋ ମନକୁ ପାଇଲା । ମୋର ଯାହା ଇଚ୍ଛା, ତାହା କହିବାକୁ ସାହସ କୁଳେଇଲଣି । ମୋର ଆଜି ଗୋଟିଏ ସନ୍ଦେହ ବାକି ଅଛି । କଂଗ୍ରେସ ଯେ ସ୍ୱରାଜ୍ୟର ମୂଳଦୁଆ ପକାଇଲା, ତାହା ମୁଁ ବୁଝିପାରୁ ନାହିଁ ।

ସଂପାଦକ -- ଦେଖନ୍ତୁ, କଂଗ୍ରେସ ଭାରତର ବିଭିନ୍ନ ଅଞ୍ଚଳରେ ପ୍ରଜାଙ୍କୁ ଏକଜୁଟ କରିଛି, ଏବଂ ଆମ ମଧ୍ୟରେ ରାଷ୍ଟ୍ରୀୟତାର ଭାବନା ଆଣି ଦେଇଛି । କଂଗ୍ରେସ ଉପରେ ସରକାରଙ୍କର ଶ୍ୟେନ (ଅଶୁଭ) ଦୃଷ୍ଟି ବରାବର ରହିଛି । ଭାରତର ପ୍ରଜାମାନେ ହିଁ ରାଜସ୍ୱ ଆଦାୟ ଓ ଖର୍ଚ୍ଚ ନିୟନ୍ତ୍ରଣ କରିବାର ଅଧିକାରୀ ବୋଲି କଂଗ୍ରେସ ସବୁବେଳେ ଦାବୀ କରିଆସିଛି ଏବଂ କ୍ୟାନାଡାରେ ଯେଉଁ ପ୍ରକାର ସ୍ୱାୟତ୍ତଶାସନ ଚାଲିଛି, କଂଗ୍ରେସ ସେହି ପ୍ରକାରର ସ୍ୱାୟତ୍ତ-ଶାସନ ମଧ୍ୟ ଚାହୁଁଛି । ସେ ପ୍ରକାରର ସ୍ୱାୟତ୍ତଶାସନ ଆମେ ପାଇପାରିବୁଁ କି ନାହିଁ, ଆମେ ତାହା ଚାହୁଁ କି ନାହିଁ ଏବଂ ତାହାଠାରୁ ଅଧିକ ଉତ୍କୃଷ୍ଟ ଅଛି କି ନାହିଁ, ସେ କଥା

ନଥାଏ । ମୋର କେବଳ ଏତିକି ଦେଖାଇ ଦେବାର କଥା ଯେ କଂଗ୍ରେସ ହିଁ ଭାରତବର୍ଷକୁ ସ୍ୱରାଜ୍ୟର ପୂର୍ବ ସ୍ୱାଦ ଚଖେଇଛି । କଂଗ୍ରେସକୁ ଏହି ସମ୍ମାନପ୍ରାପ୍ତିରୁ ବଞ୍ଚିତ କରିବା ଠିକ୍ ହେବ ନାହିଁ ଏବଂ ଏପରି କରିବା ଆମ ପକ୍ଷରେ ଯେ କେବଳ ଅକୃତଜ୍ଞତା ହେବ, ସେତିକି ନୁହେଁ; ଉପରନ୍ତୁ ଆମେ ଯେଉଁ ଲକ୍ଷ୍ୟ ହାସଲ କରିବାକୁ ଚାହୁଁଛୁ, ସେଥିରେ ମଧ୍ୟ ବିଘ୍ନ ଉପୁଜିବ । ଆମେ ଯଦି କଂଗ୍ରେସକୁ ଗୋଟିଏ ସ୍ୱରାଜ୍ୟ-ବିରୋଧୀ ଅନୁଷ୍ଠାନ ବୋଲି ଭାବିବୁଁ ଓ ଆପଣାର ନ ମଣିବୁଁ, ତେବେ ତାକୁ ଆମ କାମରେ ଲଗାଇ ପାରିବୁ ନାହିଁ ।

# ବଙ୍ଗ-ଭଙ୍ଗ

ପାଠକ—ଆପଣଙ୍କ କହିବା ଅନୁସାରେ ବସ୍ତୁର କଲେ କଂଗ୍ରେସ ସ୍ୱରାଜ୍ୟର ମୂଳଦୁଆ ପକେଇବା କଥାଟା ଠିକ୍ ବୋଲି ମନେ ହେଉଛି । କିନ୍ତୁ ଏ ଜାଗରଣ ଯେ ପ୍ରକୃତ ଜାଗରଣ ନୁହେଁ, ଏ କଥା ଆପଣ ମାନିବେ । ପ୍ରକୃତ ଜାଗରଣ କେବେ ଓ କିପରି ଦେଖା ଦେଲା ?

ସଂପାଦକ—ମଂଜିଟି ସବୁବେଳେ ଦେଖାଯାଏ ନାହିଁ । ମାଟି ତଳେ ଥାଇ ତାହା କାମ କରିଯାଏ ଏବଂ ତାହା ନିଜେ ଯେତେବେଳେ ଲୋପ ପାଇଯାଏ, ସେତେବେଳେ ଯାଇ ଗଛଟି ମାଟି ଉପରକୁ ଦେଖାଯାଏ । କଂଗ୍ରେସ ମଧ୍ୟ ଏହିପରି କାମ କରିଛି । ତଥାପି, ଯାହାକୁ ଆପଣ ପ୍ରକୃତ ଜାଗରଣ ବୋଲି ଭାବୁଛନ୍ତି, ତାହା ଦେଖାଦେଲା ବଙ୍ଗଳାର ବ୍ୟବଚ୍ଛେଦ ବା ବଙ୍ଗ ଭଙ୍ଗ ପରେ । ସେଥିପାଇଁ ଆମେ ଲର୍ଡ଼ କର୍ଜନଙ୍କଠାରେ କୃତଜ୍ଞ । ବଂଗ-ଭଙ୍ଗ ବେଳେ ବଙ୍ଗଳାର ଅଧିବାସୀମାନେ ଏହି କାର୍ଯ୍ୟାନୁଷ୍ଠାନ ଅନୁଚିତ ବୋଲି ଲର୍ଡ଼ କର୍ଜନଙ୍କୁ ବୁଝାଇବା ପାଇଁ ବହୁତ ଯୁକ୍ତି ଦର୍ଶାଇଲେ କିନ୍ତୁ ସେ ତାଙ୍କ କ୍ଷମତାମଦରେ ମତ୍ତ ହୋଇ ସେହି ପ୍ରାର୍ଥନା ପ୍ରତି କର୍ଣ୍ଣପାତ କଲେନାହିଁ । ସେ ଭାବିଥିଲେ ଯେ ଭାରତୀୟମାନେ ପିଲାମାନଙ୍କ ପରି କେବଳ ପାଟିତୁଣ୍ଡ କରିବା ଛଡ଼ା କାମରେ କିଛି କରିବେ ନାହିଁ । ସେ ଅପମାନଜନକ କଥା କହି ବଂଗ ପ୍ରଦେଶକୁ ଦୁଇ ଖଣ୍ଡ କରିଦେଲେ । ସେହି ବ୍ରିଟିଶ ସାମ୍ରାଜ୍ୟର ବ୍ୟବଚ୍ଛେଦ ଦିନ ବୋଲି ଧରାଯାଇପାରେ ।

ଏହି ବଂଗ ଭଙ୍ଗ ଫଳରେ ବ୍ରିଟିଶ-ଶକ୍ତି ଯେଉଁ ଧକ୍କା ପାଇଲା, ତାହାର ସମାନ ଧକ୍କା ଅନ୍ୟ କୌଣସି ଘଟଣାରେ ତାକୁ ଲାଗି ନ ଥିଲା । ଏହାର ଅର୍ଥ ନୁହେଁ ଯେ ସେମାନେ ଆଜି ଯେତେ ଯେତେ ଅନ୍ୟାୟ କରିଛନ୍ତି, ସେଗୁଡ଼ାକ ବଂଗ-ଭଂଗଠାରୁ ଊଣା ଜାଜ୍ୱଲ୍ୟମାନ । ଲୁଣ ଉପରେ ଟିକସ କିଛି ଊଣା ଅନ୍ୟାୟ ନୁହେଁ । ଏହିପରି ଆହୁରି ଅନେକ କଥା ଆମେ ପରେ ଦେଖି-ପାରିବା । କିନ୍ତୁ ବଂଗ-ବ୍ୟବଚ୍ଛେଦକୁ ବିରୋଧ କରିବା ପାଇଁ ଦେଶବାସୀ ପ୍ରସ୍ତୁତ ଥିଲେ । ସେ ସମୟରେ ଭାରତବାସୀଙ୍କ ମଧ୍ୟରେ ଅତ୍ୟଧିକ ଭାବପ୍ରବଣତା ଦେଖାଦେଇଥିଲା ଏବଂ ଅନେକ ନେତୃସ୍ଥାନୀୟ ବଙ୍ଗାଳୀ ନିଜର ସର୍ବସ୍ୱ ଉତ୍ସର୍ଗ କରିଦେବା ପାଇଁ ବାହାରି ପଡ଼ିଥିଲେ । ସେମାନେ ନିଜେ ନିଜର ଶକ୍ତି କଳି ପାରି-ଥିଲେ । ସେଥିପାଇଁ ସଙ୍ଗେ ସଙ୍ଗେ ନିଆଁ ଜଳି ଉଠିଲା । ବର୍ତ୍ତମାନ ସେ ନିଆଁକୁ ତ୍ରାସ୍ତ ଲିଭାଇ ହେବ ନାହିଁ; ତାକୁ ଲିଭାଇବା ଦରକାର ମଧ୍ୟ ନାହିଁ । ବଂଗ-ଭଂଗ ବାତିଲ ହୋଇଯିବ । ବଂଗଳାର ଏ ଦୁଇଖଣ୍ଡ ପୁଣି ମିଶିଯିବ । କିନ୍ତୁ ଇଂରେଜ-ସାମ୍ରାଜ୍ୟ ରୂପକ ଜାହାଜରେ ଯେଉଁ ଫାଟ ହୋଇଗଲା, ତାହା ଚିରୁଦିନ ପାଇଁ ରହିବ; ଉପରକୁ ସେ ଫାଟ ଦିନକୁ ଦିନ ବଡ଼ ହୋଇଯିବ । ଜାଗ୍ରତ ଭାରତ ପୁଣି ଶୋଇ ପଡ଼ିବା ଆଉ ସମ୍ଭବ ନୁହେଁ । ବଂଗ-ଭଙ୍ଗ ରଦ୍ଦ୍ କରିବାର ଦାବୀଟା ଯେ ସ୍ୱରାଜ୍ୟ ଦାବୀ ସଂଗେ ସମାନ, ବଙ୍ଗଳାର ନେତାମାନେ ଏ କଥା ଭଲରୂପେ ବୁଝନ୍ତି ଏବଂ ବ୍ରିଟିଶ ସରକାରର କର୍ମଚାରୀମାନେ ସେ କଥା ଉପଲବ୍ଧି କରନ୍ତି । ସେଥିପାଇଁ ବଂଗ-ଭଂଗ ଏ ପର୍ଯ୍ୟନ୍ତ କାୟମ୍ ରହିଛି । ଯହୁଁ ଯହୁଁ ଦିନ ବିତିଯାଉଛି, ତହୁଁ ତହୁଁ

(ଭାରତରେ) ରାଷ୍ଟ୍ରୀୟତା ଗଢ଼ିଉଠୁଛି । ଦିନକରେ କୌଣସି ରାଷ୍ଟ୍ର ଗଢ଼ିଉଠେ ନାହିଁ, ରାଷ୍ଟ୍ର ଗଢ଼ିବାକୁ ବହୁ ବର୍ଷ ଲାଗିଯାଏ ।

ପାଠକ—ଆପଣଙ୍କର ମତରେ ବଂଗ-ବ୍ୟବଚ୍ଛେଦର ଫଳ କଅଣ ହେଲା ?

ସଂପାଦକ—ଆଜଯାଏ ଆମେ ଧରି ନେଇଥିଲୁ ଯେ ଭାରତ ସମ୍ରାଟଙ୍କ ପାଖରେ ଆବେଦନ ନିବେଦନ କରିବା ଉଚିତ ଏବଂ ଆମ ଗୁହାରି ଶୁଣା ନ ଗଲେ ଆମେ ଚୁପ୍ ହୋଇ ବସିବା ଓ ନିବେଦନ କରିବା । ବଙ୍ଗ-ଭଙ୍ଗ ପରେ ଲୋକେ ଦେଖିଲେ ଯେ ସେମାନଙ୍କର ନିବେଦନ ପଛରେ ସନ୍ଦିଗ୍ଧ ଲୋକ-ଶକ୍ତି ଏବଂ ଲୋକଙ୍କର କଷ୍ଟ ସହିବାର ଶକ୍ତି ଥିବା ଦରକାର । ଏହି ନୂଆ ଉତ୍ସାହ ହିଁ ବଙ୍ଗ-ଭଙ୍ଗର ସବୁଠାରୁ ବଡ଼ ପରିଣତି ବୋଲି ବିଚାରିବାକୁ ହେବ । ଖବର କାଗଜରେ ବ୍ୟକ୍ତ ସ୍ପଷ୍ଟ ମତ ଗୁଡ଼ିକରୁ ଏ ଉତ୍ସାହ ଫୁଟି ଉଠିଲା । ଫଳରେ ଲେଖାର ଭାଷା କଡ଼ା ହେଲା । ଯେଉଁ କଥାକୁ ଲୋକେ ଡରରେ ଥରି ଓ ଲୁଚେଇ ଛପେଇ କହୁଥିଲେ, ସେ କଥା ପ୍ରକାଶ୍ୟ ଭାବରେ କହିଲେ ଓ ଲେଖିଲେ । ସ୍ୱଦେଶୀ ଆନ୍ଦୋଳନର ଅଧିବାସ ହେଲା । ଇଂରେଜଙ୍କୁ ଦେଖିବା ମାତ୍ରେ ପିଲା ଓ ବଡ଼ ସମସ୍ତେ ଡରରେ ଦଉଡ଼ି ପଳାଉ-ଥିଲେ । ବର୍ତ୍ତମାନ କେହି ଆଉ ସେପରି ଡରୁ ନାହାନ୍ତି । ମାଡ଼କୁ, ଏପରିକି ଜେଲ ଯିବାକୁ ସୁଦ୍ଧା ଡରୁ ନାହାନ୍ତି । ଭାରତମାତାର କେତେ ବରପୁତ୍ର ଆଜି ନିର୍ବାସନ ଦଣ୍ଡ ଭୋଗୁଛନ୍ତି । ଏ ମନୋଭାବ ଗୁହାରି ଜଣାଇବାଠାରୁ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର । ଏହିରୂପେ ଲୋକସାଧାରଣ ପ୍ରଭାବିତ ହୋଇଛନ୍ତି ଓ କାମରେ କିଛି କରିବାକୁ ଉଦ୍‌ବୁଦ୍ଧ ହୋଇଛନ୍ତି । ବଙ୍ଗଳାରେ ଯେଉଁ ଜାଗୃତି ଜନ୍ମଲାଭ

କଲା, ତାହା ଉତ୍ତରରେ ପଞ୍ଜାବ ପର୍ଯ୍ୟନ୍ତ ଓ ଦକ୍ଷିଣରେ କନ୍ୟା-କୁମାରୀ ପର୍ଯ୍ୟନ୍ତ ବ୍ୟାପିଗଲା ।

ପାଠକ—ବଂଗ-ଭଂଗ ଫଳରେ ଏହା ଛଡ଼ା ଆଉ କିଛି ଆଖିଦୃଷ୍ଟିଆ ଫଳ ହୋଇଛି କି ?

ସଂପାଦକ—ବଙ୍ଗ-ଭଙ୍ଗ ଫଳରେ କେବଳ ଇଂରେଜ (ସାମ୍ରାଜ୍ୟ ରୂପକ) ଜାହାଜ ଯେ ଦୁଇଫାଳ ହୋଇଯାଇଛି, ତାହା ନୁହେଁ; ଠିକ୍ ସେହିପରି ଆମ ଭିତରେ ମଧ୍ୟ ତାହା ବିଭେଦ ସୃଷ୍ଟି କରିଛି । ମହାନ୍ ଘଟନାରୁ ବିରାଟ ଫଳ ଫଳେ । ଆମ ଲୋକ ନେତାମାନେ ଦୁଇ ଦଳ ହୋଇ ଯାଇଛନ୍ତି; ନରମ-ପନ୍ଥୀ ଓ ଚରମପନ୍ଥୀ ( Moderates and Extremists ) ସେମାନଙ୍କୁ ଆମେ ମାନ୍ଦାଦଳ ଓ ଅଧୀର ଦଳ ମଧ୍ୟ କହିପାରୁ । କେହି କେହି ମଡରେଟଙ୍କୁ ଡରୁଆ ଦଳ ଓ ଏକ୍ସ୍ଟ୍ରିମିଷ୍ଟ୍‌ଙ୍କୁ ସାହାସୀ ଦଳ ମଧ୍ୟ କହୁଛନ୍ତି । ସମସ୍ତେ ନିଜେ ନିଜର ପୂର୍ବ ଧାରଣା ଅନୁସାରେ ଏ ଦୁଇ ଶବ୍ଦର ଅର୍ଥ କରୁଛନ୍ତି । ଏ କଥା ସତ୍ୟ ଯେ ଏ ଦୁଇ ଦଳ ମଧ୍ୟରେ ଶତ୍ରୁତା ସୃଷ୍ଟି ହୋଇଛି । ଗୋଟିଏ ଦଳ ଅନ୍ୟ ଦଳକୁ ବିଶ୍ୱାସ କରୁନାହିଁ । ଗୋଟିଏ ଦଳର ଦୁରଭିସନ୍ଧି ଅଛି ବୋଲି ଅପର ଦଳ ଆକ୍ଷେପ କରୁଛନ୍ତି । ସୁରଟ କଂଗ୍ରେସ ବେଳେ ପ୍ରାୟ ମାଡ଼-ପିଟ ହୋଇଥିଲା । ଏପରି ଦୁଇ ଦଳ ହେବାଟା ଦେଶ ପକ୍ଷରେ ଶୁଭ ଲକ୍ଷଣ ନୁହେଁ ବୋଲି ମୁଁ ଭାବେ । ମାତ୍ର ମୁଁ ମଧ୍ୟ ଭାବେ ଯେ ଏ ବିଭେଦ ବେଶୀ ଦିନ ରହିବ ନାହିଁ । ନେତାମାନେ କେତେଦିନ ତିଷ୍ଠିବେ, ତାହା ଉପରେ ଏ ସବୁ ନିର୍ଭର କରେ ।

— ——

# ଅଶାଂତି ଓ ଅସଂତୋଷ

ପାଠକ—ତାହାହେଲେ ଆପଣ ବଙ୍ଗ-ଭଙ୍ଗକୁ କଅଣ ଜାଗରଣର କାରଣ ଭାବୁଛନ୍ତି ? ସେଥିରୁ ଯେଉଁ ଅଶାନ୍ତି ଉପୁଜିଲା, ତାକୁ ଆପଣ ସ୍ୱାଗତ କରୁଛନ୍ତି କି ?

ସଂପାଦକ—ମଣିଷ ନିଦରୁ ଉଠିଲେ ଭିଡ଼ ମୋଡ଼ ହୋଇ ଅଳସ ଭାଙ୍ଗେ, ଏଣେ ତେଣେ ବୁଲେ ଓ ଅଶାନ୍ତ ହୋଇଉଠେ । ନିଦ ପୁରାପୁରି ଛାଡ଼ିବାକୁ ଟିକିଏ ସମୟ ଲାଗେ । ସେହିପରି ବଙ୍ଗ-ଭଙ୍ଗ ଫଳରେ ଜାଗରଣ ଆସିଥିଲେ ହେଁ ଅଚେତନ ପୁରାପୁରି ଯାଇନାହିଁ । ଏବେ ସୁଦ୍ଧା ଆମେ ଭିଡ଼ମୋଡ଼ ଅବସ୍ଥାରେ ରହିଛୁ । ନିଦ୍ରା ଓ ଜାଗରଣର ମଝି ଅବସ୍ଥା ଯେପରି ଆବଶ୍ୟକ ଓ ସ୍ୱାଭାବିକ ମନେ ହୁଏ, ସେହିପରି ବଙ୍ଗ-ଭଙ୍ଗ ଓ ସେହି ହେତୁରୁ ଯେଉଁ ଅଶାନ୍ତି ଭାରତବର୍ଷରେ ବ୍ୟାପିଲା, ତାହା ଆବଶ୍ୟକ ଓ ଯଥୋଚିତ ବୋଲି କୁହାଯାଇ ପାରେ । ଦେଶରେ ଅଶାନ୍ତି ରହିଛି—ଆମର ଏହି ଜ୍ଞାନ ଫଳରେ ଖୁବ ସମ୍ଭବ ଆମେ ଏହି ଅଶାନ୍ତ ଅବସ୍ଥାରୁ ଉଦ୍ଧାର ପାଇବୁ । ନିଦରୁ ଉଠିସାରି ବେଶୀ ସମୟ ଆମେ ଅର୍ଦ୍ଧ ଅଚେତନ ଅବସ୍ଥାରେ ରହୁନାହୁଁ । ଶୀଘ୍ର ବା ବିଳମ୍ବରେ ହେଲେ ପଛକେ, ଆମେ ପୁରାପୁରି ଚେଇଁ ଉଠୁ । ସେଥିପାଇଁ ଏ ଅଶାନ୍ତିରୁ ଆମେ ନିଶ୍ଚୟ ମୁକ୍ତ ହେବୁ । ବର୍ତ୍ତମାନର ଅଶାନ୍ତି କାହାରିକୁ ସୁଖ ଲାଗୁ ନାହିଁ ।

ପାଠକ—ଅଶାନ୍ତିର ଅନ୍ୟରୂପ କଅଣ ?

ସମ୍ପାଦକ—ବାସ୍ତବରେ ଅସନ୍ତୋଷ ହିଁ ଅଶାନ୍ତ ରୂପେ ଦେଖା ଦେଇଛି । ତାହାକୁ ଆମେ ଆଜକାଲି ଅନ୍‌ରେଷ୍ଟ ବା ଅଶାନ୍ତି କହୁଛୁଁ । କଂଗ୍ରେସ ଯୁଗରେ ତାହାକୁ ଡ଼ିସ୍‌କଣ୍ଟେଣ୍ଟର ଗ୍ରୁପ ଦିଆଯାଇଥିଲା । ମିଷ୍ଟର ହ୍ୟୁମ୍ ବରାବର କହୁଥିଲେ ଯେ, ଭାରତବର୍ଷରେ ଅସନ୍ତୋଷ ଦରକାର । ଏହି ଅସନ୍ତୋଷ ଅତି ଉପକାରୀ । ମଣିଷ ଯେଉଁ ପର୍ଯ୍ୟନ୍ତ ନିଜ ଅବସ୍ଥାରେ ସନ୍ତୁଷ୍ଟ ରହିଥାଏ, ସେ ପର୍ଯ୍ୟନ୍ତ ସେଥିରୁ ଉଧୁରିବା ପାଇଁ ତାକୁ ବୁଝାଇବା ବଡ଼ କଠିନ । ସେଥିପାଇଁ ସର୍ବ ପ୍ରକାରର ସଂସ୍କାର ଆଣିବା ପୂର୍ବରୁ ଅସନ୍ତୋଷ ଦରକାର । କୌଣସି ଜିନିଷରୁ ମନୁଷ୍ୟ ମନ ଛୁଟିଗଲେ ସିନା ସେ ତାକୁ ଫିଙ୍ଗିଦିଏ । ଭାରତୀୟ ଓ ଇଂରେଜମାନଙ୍କର ମହାନ୍ ଲେଖାମାନ ପଢ଼ି ଏ ପ୍ରକାରର ଅସନ୍ତୋଷ ଆମ ମଧ୍ୟରେ ଜନ୍ମିଛି । ସେହି ଅସନ୍ତୋଷ ଅଶାନ୍ତ ଭଆଇଛି ଏବଂ ସେହି ଅଶାନ୍ତ ବହୁ ଲୋକଙ୍କର ମୃତ୍ୟୁ , କାରାବାସ ଓ ନିର୍ବାସନ ଦଣ୍ଡ ଘଟାଇଛି । ଏଣିକି ଏହି ପରିସ୍ଥିତି ଲାଗିରହିବ । ଏପରି ହେବା ସୁନିଶ୍ଚିତ । ଏସବୁ ଭଲ ଲକ୍ଷଣ ବୋଲି କୁହାଯାଇପାରେ; କିନ୍ତୁ ଏହାର ପରିଣାମ ଖରାପ ହେବାର ସମ୍ଭାବନା ମଧ୍ୟ ରହିଛି ।

# ସ୍ୱରାଜ୍ୟ କଣ ?

ପାଠକ—କଂଗ୍ରେସ ଭାରତବର୍ଷକୁ ଗୋଟିଏ ରାଷ୍ଟ୍ର ବା ମହାଜାତି ରୂପେ ଗଢ଼ିବା ପାଇଁ କଅଣ କରିଛି, ବଙ୍ଗ-ଭଙ୍ଗ ଫଳରେ କିପରି ଜାଗରଣ ଆସିଲା ଏବଂ ଅଶାନ୍ତି ଓ ଅସନ୍ତୋଷ କିପରି ଦେଶସାରା ବ୍ୟାପିଗଲା, ଏ ସବୁ କଥା ମୁଁ ଜାଣିଲି । ବର୍ତ୍ତମାନ ସ୍ୱରାଜ୍ୟ ବିଷୟରେ ଆପଣଙ୍କର ଦୃଷ୍ଟିକୋଣ କଅଣ, ତାହା ମୁଁ ଜାଣିବାକୁ ଚାହେଁ । ମୋର ଆଶଙ୍କା ଆମ ବୁଝିବାରେ କିଛି ପାର୍ଥକ୍ୟ ହୋଇପାରେ ।

ସଂପାଦକ—କୌଣସି ବିଷୟରେ ଅର୍ଥ କରିବାରେ ପାର୍ଥକ୍ୟ ରହିବାର ସମ୍ଭାବନା ତ ରହିଛି । ସ୍ୱରାଜ୍ୟ ପାଇଁ ଆପଣ, ମୁଁ ଓ ସମସ୍ତ ଭାରତବାସୀ ଅଧୀର, କିନ୍ତୁ ସ୍ୱରାଜ୍ୟ କଅଣ ସେ ବିଷୟରେ ଆମେ ନିଶ୍ଚିତ ଭାବରେ ସମ୍ମତ ହୋଇ ନାହୁଁ । ଭାରତରୁ ଇଂରେଜମାନଙ୍କୁ ତଡ଼ିବା ଉଚିତ, ଏ ବିଚାର ଅନେକ ଲୋକଙ୍କ ମୁହଁରୁ ଶୁଣିବାକୁ ମିଳେ, କିନ୍ତୁ ସେମାନଙ୍କୁ କାହିଁକି ତଡ଼ିବା ଉଚିତ, ସେ ବିଷୟରେ ସେମାନଙ୍କର କୌଣସି ଯଥାର୍ଥ ଧାରଣା ଥିଲାପରି ଜଣାଯାଏ ନାହିଁ । ଆଚ୍ଛା, ଆପଣଙ୍କୁ ମୁଁ ଗୋଟିଏ ପ୍ରଶ୍ନ କରିବି । ମନେକରନ୍ତୁ ଆମେ ଯାହା ଚାହୁଁ, ତାହା ଯଦି ଇଂରେଜମାନେ ଦେଇଦିଅନ୍ତି, ତେବେ ସେମାନଙ୍କୁ ଏଠାରୁ ତଡ଼ିବା ଦରକାର ବୋଲି ଆପଣ ଭାବୁଛନ୍ତି କି ?

ପାଠକ—ମୁଁ ସେମାନଙ୍କୁ କେବଳ ଗୋଟିଏ କଥା ମାଗିବି। ତାହା ହେଉଛି "ଦୟାକରି ଆପଣ ଆମ ଦେଶରୁ ଚାଲି ଯାଆନ୍ତୁ"। ଏ ଦାବୀ ସ୍ୱୀକାର କରି ସେମାନେ ଚାଲିଯିବେ ଏବଂ ତତ୍‌ସତ୍ତ୍ୱେ କେହି ଯଦି ଅର୍ଥକୁ ଅନର୍ଥ କରି କହିବେ ଯେ ଇଂରେଜମାନେ ଏ ଦେଶରେ ରହିଛନ୍ତି, ତେବେ ସେ କଥାକୁ ମୁଁ ପରବାୟ କରିବି ନାହିଁ। ସେ କ୍ଷେତ୍ରରେ ମୁଁ ଏହା ହିଁ ଭାବିବି ଯେ ଆମ ଭାଷାରେ କେତେକ ଲୋକ 'ଯିବାର' ଅର୍ଥ 'ରହିବା' ବୁଝୁଛନ୍ତି। ( ହସିଦେଇ କହିଲେ )

ସଂପାଦକ—ଆଚ୍ଛା, ଆମେ ଧରିନେଉଛୁଁ କି ଆମ ଦାବୀ ଅନୁସାରେ ଇଂରେଜମାନେ ଏ ଦେଶରୁ ଚାଲିଗଲେ। ତାହାପରେ ଆପଣ କଅଣ କରିବେ ?

ପାଠକ—ଏ ପ୍ରଶ୍ନର ଜବାବ ଏତିକବେଳେ ଦେଇହେବ ନାହିଁ। ସେମାନେ ଯେପରି ବିଦାୟ ନେବେ, ତାହାରି ଉପରେ ତାହାର ପରବର୍ତ୍ତୀ ଅବସ୍ଥା ନିର୍ଭର କରିବ। ଆପଣଙ୍କର ଅନୁମାନ ଅନୁସାରେ ଯଦି ସେମାନେ ଚାଲିଯାନ୍ତି, ମୋତେ ବୋଧହେଉଛି ଯେ ଆମେ ତଥାପି ସେମାନଙ୍କର ସମ୍ବିଧାନକୁ ବଜାୟ ରଖିବୁଁ ବା ଆଇନକାନୁନ ଜାରି ରଖିବୁଁ ଏବଂ ଆମେ ଶାସନ ଚଳାଇବୁଁ। ଆମେ କହିବା ମାତ୍ରେ ଯଦି ଇଂରେଜମାନେ ଚାଲିଯିବେ, ତେବେ ଆମ ହାତ ପାହାନ୍ତାରେ ସଂଗଠିତ ସୈନ୍ୟବାହିନୀ, ଇତ୍ୟାଦି ରହିବ। ତେଣୁ ଶାସନ କାର୍ଯ୍ୟ ଚଳାଇବାରେ ଆମର କୌଣସି ଅସୁବିଧା ହେବନାହିଁ।

ସଂପାଦକ ଆପଣ ଏପରି ଭାବିଲେ ଭାବନ୍ତୁ ପଛକେ, ମୁଁ କଦାପି ତାହା ସ୍ୱୀକାର କରିବି ନାହିଁ। ତେବେ ଏ ବିଷୟରେ ମୁଁ ଅଧିକ ତର୍କ-ବିତର୍କ ବର୍ତ୍ତମାନ କରିବାକୁ ଚାହେଁ ନାହିଁ।

ମୋତେ ଆପଣଙ୍କୁ ପ୍ରଶ୍ନର ଉତ୍ତର ଦେବାକୁ ଅଛି । ମୁଁ ଆପଣଙ୍କୁ କେତୋଟି ପ୍ରଶ୍ନ କରିବା ଜରିଆରେ ସେହି ଉତ୍ତର ଦେଇ ପାରିବ । ସେଇଥିପାଇଁ ଏ ପ୍ରଶ୍ନ କରୁଛି । ଆମେ ଇଂରେଜମାନଙ୍କୁ ତଡ଼ିବାକୁ ଚାହୁଁଛୁ କାହିଁକି ?

ପାଠକ— କାରଣ, ଏ ଶାସନ ଫଳରେ ଏ ଦେଶ ଧନରୁ ଧନ କାଂଗାଳ ହୋଇ ଯାଇଛି । ସେମାନେ ପ୍ରତିବର୍ଷ ଆମ ଦେଶରୁ ଧନରତ୍ନ ବୋହି ନେଉଛନ୍ତି । ଗୋରା ଲୋକଙ୍କପାଇଁ ବଡ଼ ବଡ଼ ସରକାରୀ ଚାକିରୀ ରିଜର୍ଭ ରହିଛି । ସେମାନେ ଆମକୁ ଖାଲି ଗୋଲାମ କରି ରଖିଛନ୍ତି । ଆମ ସହିତ ଅସମ୍ମାନଜନକ ବ୍ୟବହାର କରୁଛନ୍ତି ଓ ଆମ ମନୋଭାବ ପ୍ରତି ସେମାନଙ୍କର ଟିକିଏ ହେଲେ ପରବାୟ ନାହିଁ ।

ସଂପାଦକ—ସେମାନେ ଯଦି ଏ ଦେଶରୁ ଧନରତ୍ନ ତାଙ୍କ ଦେଶକୁ ବୋହି ନ ନେବେ, ନମ୍ର ହେବେ ଓ ଆମକୁ ବଡ଼ ବଡ଼ ସରକାରୀ ଚାକିରୀ ଦେବେ, ତେବେ ସେମାନେ ଏ ଦେଶରେ ରହିବାରେ ଆପଣଙ୍କର କିଛି ଆପତ୍ତି ଅଛି କି ?

ପାଠକ—ଏ ପ୍ରଶ୍ନଟି ନିରର୍ଥକ । ବାଘ ତାହାର ସ୍ୱରୂପ ବଦଳାଇ ଦେଲେ ତାହା ସହିତ ବନ୍ଧୁତା ସ୍ଥାପନ କରିବାରେ କିଛି କ୍ଷତି ଅଛି କି ବୋଲି ପଚାରିବା ଯାହା, ଏ ପ୍ରଶ୍ନ ମଧ୍ୟ ସେହିପରି । ଏପରି ପ୍ରଶ୍ନ ଦ୍ୱାରା କେବଳ ସମୟ ନଷ୍ଟ ହେବା ସାର । ବାଘ ଯଦି ତା'ର ସ୍ୱଭାବ ବଦଳାଇ ପାରିବ, ତେବେ ଇଂରେଜମାନେ ନିଜର ସ୍ୱଭାବ ଛାଡ଼ି ପାରିବେ । ଏହା କଦାପି ସମ୍ଭବ ନୁହେଁ ଏବଂ ତାହା ଘଟିବ ବୋଲି ଭାବିବା ମଣିଷ ପ୍ରକୃତି ପକ୍ଷରେ ଆଦୌ ସ୍ୱାଭାବିକ ନୁହେଁ ।

ସଂପାଦକ—କ୍ୟାନାଡ଼ାକୁ ଓ ବୁଅରମାନଙ୍କୁ ଯେଉଁ ସ୍ୱାୟତ୍ତ-ଶାସନ ମିଳିଛି ଆମକୁ ଯଦି ସେହିପରି ଶାସନ କ୍ଷମତା ମିଳିବ, ତାହାହେଲେ ଯଥେଷ୍ଟ ହେବ କି ?

ପାଠକ – ଏ ପ୍ରଶ୍ନର ମଧ୍ୟ କିଛି ଅର୍ଥ ନାହିଁ । ଆମର ଯଦି ସେମାନଙ୍କ ପରି ଶକ୍ତି (ଗୋଳା ବାରୁଦର ଶକ୍ତି) ଆସେ, ତେବେ ଆମେ ସେପରି ସ୍ୱାୟତ୍ତ ଶାସନ ପାଇପାରୁ । ସେତେବେଳେ ଆମେ ନିଜର ଜାତୀୟପତାକା ଉଡ଼ାଇବୁ । ଜାପାନ ପରି ଭାରତବର୍ଷ ହୋଇଯିବ । ଆମର ଯୁଦ୍ଧ ଜାହାଜ, ସୈନ୍ୟବାହିନୀ ରହିବ । ଫଳରେ ଆମଦେଶ ସମୃଦ୍ଧିଶାଳୀ ହେବ । ସେତେବେଳେ ଭାରତବର୍ଷର ସ୍ୱର ସାରା ଦୁନିଆରେ ମୁଖରିତ ହୋଇ ଉଠିବ ।

ସଂପାଦକ—ଆପଣ ଗୋଟିଏ ଭଲ ଚିତ୍ର ( ବର୍ଣ୍ଣନା ) ଦେଲେ । ଏହାର ଅର୍ଥ ହେଲା ଆମେ ଇଂରେଜ ଶାସନ ଚାହୁଁଛୁ ମାତ୍ର ଇଂରେଜ (ଶାସକ)ମାନଙ୍କୁ ଚାହୁଁ ନାହୁଁ । ଆପଣ ବାଘର ସ୍ୱଭାବକୁ ଚାହୁଁଛନ୍ତି ମାତ୍ର ବାଘକୁ ଚାହୁଁ ନାହାନ୍ତି । ଅର୍ଥାତ୍, ଆପଣ ଭାରତବର୍ଷକୁ ଇଂଲଣ୍ଡୀୟ ( ଇଂରେଜମାନଙ୍କର ଶାସନ, ସଂସ୍କୃତି, ସଭ୍ୟତା, ଆଦିର ଅଧୀନ ) କରିଦେବାକୁ ଚାହୁଁଛନ୍ତି । ଭାରତବର୍ଷ ଯେତେବେଳେ ଇଂଲଣ୍ଡୀୟ ପାଲଟି ଯିବ, ସେତେବେଳେ ସେ ହିନ୍ଦୁସ୍ଥାନ ବୋଲାଇବ ନାହିଁ । ମାତ୍ର ଇଂଲିଶ୍‌ସ୍ଥାନ ବୋଲାଇବ । ମୁଁ ଯେଉଁ ସ୍ୱରାଜ୍ୟ ଚାହେଁ, ଏହା ସେ ସ୍ୱରାଜ୍ୟ ନୁହେଁ ।

ପାଠକ—ସ୍ୱରାଜ୍ୟ ବିଷୟରେ ମୋର ଯେଉଁ ଧାରଣା ରହିଛି, ମୁଁ ତାହା କହିଲି । ଆମେ ଯେଉଁ ଶିକ୍ଷା ପାଉଛୁ, ତାହାର ଯଦି କୌଣସି ମୂଲ୍ୟ ଥାଏ, ସ୍ପେନ୍‌ସର, ମିଲ୍, ଆଦି ବଡ଼ ବଡ଼ ଲେଖକମାନଙ୍କର ଯେଉଁ ରଚନା ଆମେ ପଢ଼ୁଛୁ, ତାହାର ଯଦି

କିଛି ମହତ୍ତ୍ୱ ଥାଏ ଏବଂ ଇଂରେଜମାନଙ୍କର ପାର୍ଲାମେଣ୍ଟ ହିଁ ଯଦି ପାର୍ଲାମେଣ୍ଟମାନଙ୍କର ଜନନୀ, ତେବେ ଆମର ଯେ ଇଂରେଜମାନଙ୍କୁ ଅନୁକରଣ କରିବା ଉଚିତ, ଏ ବିଷୟରେ ମୋର କୌଣସି ସନ୍ଦେହ ନାହିଁ । ଏହି ଅନୁକରଣ ଏତେଦୂର ହେବା ଆବଶ୍ୟକ ଯେ ସେମାନେ ଯେପରି ନିଜ ଦେଶରେ ଅନ୍ୟ ଦେଶର ଲୋକଙ୍କୁ ପାଦ ପକାଇବାକୁ ଦେଉ ନାହାନ୍ତି, ସେହିପରି ଆମେ ମଧ୍ୟ ଆମ ଦେଶରେ ବିଦେଶୀଙ୍କୁ ପୂରିଇ ଦେବୁ ନାହିଁ । ଅବଶ୍ୟ ସେମାନେ ସେମାନଙ୍କ ନିଜ ଦେଶରେ ଯାହା ସବୁ କରିଛନ୍ତି, ସେପରି ଅନ୍ୟ କେଉଁଠି ଦେଖାଯାଏ ନାହିଁ । ସେଥିପାଇଁ ଆମଦେଶକୁ ଆମେ ସେମାନଙ୍କର ଅନୁଷ୍ଠାନ, ରୀତିନୀତିଗୁଡ଼ିକ ଆମଦାନୀ କରିବା ଏବଂ ଆମ ଦେଶରେ ଚଳାଇବା ଉଚିତ । କିନ୍ତୁ ଆପଣ ବର୍ତ୍ତମାନ ଆପଣଙ୍କ ମତ କହନ୍ତୁ ।

ସଂପାଦକ—ଆଜି ଟିକିଏ ଧୈର୍ଯ୍ୟ ଧରିବାକୁ ହେବ । ମୋ ବକ୍ତବ୍ୟର କଅଣ, ତାହା ଏହି ଆଲୋଚନାରେ କ୍ରମେ ବିକଶିତ ହୋଇ ଉଠିବ ଓ ଆପଣ ଜାଣିବେ । ସ୍ୱରାଜ୍ୟ ପ୍ରକୃତରେ କଅଣ, ତାହା ବୁଝିବା ଆପଣଙ୍କୁ ଯେତେ ସହଜ ବୋଧ ହେଉଛି, ମୋତେ ସେତିକି କଠିନ ଲାଗୁଛି । ସେଥିପାଇଁ ବର୍ତ୍ତମାନ ମୁଁ ଆପଣଙ୍କୁ କେବଳ ଏତିକି ବୁଝାଇବି ଯେ ଆପଣ ଯାହାକୁ ସ୍ୱରାଜ୍ୟ କହୁଛନ୍ତି, ତାହା ପ୍ରକୃତରେ ସ୍ୱରାଜ୍ୟ ନୁହେଁ ।

# ଇଂଲଣ୍ଡର ଅବସ୍ଥା

ପାଠକ—ଆପଣଙ୍କ କଥାରୁ ମୁଁ ଏହି ସିଦ୍ଧାନ୍ତରେ ଉପନୀତ ହେଉଛି ଯେ ଇଂଲ୍ୟାଣ୍ଡର ଶାସନ ବାଞ୍ଛନୀୟ ନୁହେଁ ଏବଂ ତାକୁ ଅନୁକରଣ କରିବା ଆମର ଅନୁଚିତ ।

ସମ୍ପାଦକ—ଆପଣଙ୍କର ଏ ଧାରଣା ଠିକ୍ । ଇଂଲ୍ୟାଣ୍ଡର ବର୍ତ୍ତମାନ ପରିସ୍ଥିତି ପ୍ରକୃତରେ ଦୟନୀୟ । ମୁଁ ଭଗବାନ୍‌ଙ୍କଠାରେ ପ୍ରାର୍ଥନା କରୁଛି ଯେ ଭାରତବର୍ଷ କେବେହେଁ ସେ ଦଶା ନ ଭୋଗୁ । ଆପଣ ଯାହାକୁ ପାର୍ଲାମେଣ୍ଟର ଜନନୀ କହୁଛନ୍ତି, ସେ ପାର୍ଲାମେଣ୍ଟ ତ ବନ୍ଧ୍ୟା ବା ବାରବନିତା ସଦୃଶ । ଏ ଦୁଇ ଶବ୍ଦ ବଡ଼ କର୍କଶ, କିନ୍ତୁ ଏହି ଶବ୍ଦ ଦ୍ୱୟ ତାହା ପ୍ରତି ଠିକ୍ ପ୍ରଯୁଜ୍ୟ । ମୁଁ ତାକୁ ବନ୍ଧ୍ୟା କହିବାର ହେତୁ ହେଉଛି, ଏ ପାର୍ଲାମେଣ୍ଟ ସ୍ୱେଚ୍ଛାପ୍ରଣୋଦିତ ହୋଇ ଗୋଟିଏ ସୁଦ୍ଧା ଭଲ କାମ କରିନାହିଁ । ତାହା ଉପରେ ବାହାରୁ ଚାପ ନ ପଡ଼ିଲେ, ତାହା କିଛି କରେନାହିଁ । ଏଇଟା ହେଲା ତାହାର ପ୍ରକୃତ ସ୍ଥିତି । ପୁଣି ସେ ବାରବନିତା ସଦୃଶ କାରଣ ଯେ ତାହା ଥରକୁ ଥର ବଦଳୁଥିବା ମନ୍ତ୍ରୀମଣ୍ଡଳର କର୍ତ୍ତୃତ୍ୱରେ ରହୁଛି । ଆଜି ମିଷ୍ଟର୍ ଏସ୍‌କ୍ୱିଥ୍ ତାହାର ମାଲିକ କାଲି ବାଲ୍‌ଫର୍ କର୍ତ୍ତା ହୋଇ ପାରନ୍ତି, ପୁଣି ପରଦିନ ଆଉ କିଏ ହୋଇ ପାରନ୍ତି ।

ପାଠକ—ଆପଣ ତ ଏ କଥାଟା ପରିହାସରେ କହିଲେ, ମାତ୍ର ପ୍ରକୃତରେ ବନ୍ଧ୍ୟା କେଉଁଠି ପାର୍ଲାମେଣ୍ଟ ପ୍ରତି ପ୍ରଯୁଜ୍ୟ ହୋଇ

ପାରିବ ନାହିଁ । କାରଣ, ପାର୍ଲିମେଣ୍ଟର ସଦସ୍ୟମାନେ ଲୋକଙ୍କ-ଦ୍ୱାରା ନିର୍ବାଚିତ ହୋଇଥାନ୍ତି । ତେଣୁ ଲୋକସାଧାରଣଙ୍କ ଚାପ ପଡ଼ିଲେ ହିଁ ତାହା କାମ କରିବାର କଥା । ଏହା ହିଁ ତାହାର ବିଶେଷତ୍ୱ ।

ସମ୍ପାଦକ—ଆପଣ ଭୁଲ ବୁଝୁଛନ୍ତି । ଆମେ କଥାଟାକୁ ଆହୁରି ଟିକିନିଖି କରି ପରୀକ୍ଷା କରିବା ଚାଲନ୍ତୁ । ସର୍ବୋତ୍କୃଷ୍ଟ ଲୋକେ ନିର୍ବାଚିତ ହୋଇ ପାର୍ଲିମେଣ୍ଟକୁ ଯାଆନ୍ତି ବୋଲି ବୁଝାଯାଏ । ଏହି ସଦସ୍ୟମାନେ ବେତନ ନ ନେଇ ସେବା କରନ୍ତି । ତେଣୁ ଲୋକଙ୍କ କଲ୍ୟାଣ ପାଇଁ ସେମାନେ କାର୍ଯ୍ୟ କରନ୍ତି ବୋଲି କହିବାକୁ ହେବ । ସେଠାର ଭୋଟଦାତାମାନେ ଶିକ୍ଷିତ ଓ ଭଲ ସଂସ୍କାରସମ୍ପନ୍ନ ବୋଲି ଆମେ ବିଚାରୁ । ତେଣୁ ପ୍ରତିନିଧି ବାଛିବାରେ ସେମାନେ ସାଧାରଣତଃ ଭୁଲ କରିବେ ନାହିଁ ବୋଲି ଆମେ ଧରି ନେବାର କଥା । ଏ ପ୍ରକାରର ପାର୍ଲିମେଣ୍ଟ ପାଇଁ ଲୋକଙ୍କ ଚାପ ଓ ଆବେଦନ ନିବେଦନ ଲୋଡ଼ା ନ ହେବା ଉଚିତ । ସେହି ପାର୍ଲିମେଣ୍ଟର କାମ ଏପରି ସୁଚାରୁଭାବରେ ଚାଲିବା ଉଚିତ ଯେ ଦିନକୁ ଦିନ ତାହାର ସଫଳ ସ୍ପଷ୍ଟ ଜଣା ପଡିବା ଉଚିତ । ମାତ୍ର ପ୍ରକୃତରେ ଏହା ପ୍ରତିପାଦିତ ହୋଇଛି ଯେ ପାର୍ଲିମେଣ୍ଟର ସଦସ୍ୟମାନେ ଭଣ୍ଡ ଓ ସ୍ୱାର୍ଥପର । ସେମାନେ ପ୍ରତ୍ୟେକେ ନିଜ ନିଜର କ୍ଷୁଦ୍ର ସ୍ୱାର୍ଥ-ସିଦ୍ଧି କଥା ଚିନ୍ତା କରନ୍ତି । ଭୟ ହିଁ ସେମାନଙ୍କର ଉଦ୍ଦେଶ୍ୟକୁ ପରିଚାଳିତ କରେ । ଆଜି ଯେଉଁ କାମ ହେଲା, କାଲି ତାହା ରଦ୍ଦ୍ ହୋଇପାରେ । କୌଣସି ଗୋଟିଏ କାମକୁ ପାର୍ଲାମେଣ୍ଟ ମୁଣ୍ଡ ଲଗାଇ ଥିବାର ଗୋଟିଏ ସୁଦ୍ଧା ଦୃଷ୍ଟାନ୍ତ ସ୍ମରଣ କରିବା ସମ୍ଭବପର ନୁହେଁ । ଜଟିଳ ସମସ୍ୟାଗୁଡିକ ଉପରେ ପାର୍ଲିମେଣ୍ଟରେ ବାଦାନୁବାଦ ଚାଲିଥିବାବେଳେ ସଦସ୍ୟମାନେ

ଗୋଡ଼ହାତ ଲମ୍ବେଇବା ଓ ଢୁଳେଇବା ଦେଖାଯାନ୍ତି । ପାର୍ଲମେଣ୍ଟ ସଦସ୍ୟମାନେ ବେଳେବେଳେ ଏତେ ଦୀର୍ଘ ସମୟ ଧରି ବକ୍ତୃତା କରନ୍ତି ଯେ ଶ୍ରୋତାମାନେ ବିରକ୍ତହୋଇ ଯାଆନ୍ତି । କାର୍ଲାଇଲ୍ ଏ ପାର୍ଲମେଣ୍ଟକୁ 'ପୃଥିବୀର କଥାର ହାଟ' ( talking shop of the world ) ଆଖ୍ୟା ଦେଇଛନ୍ତି । ସଦସ୍ୟମାନେ ନିର୍ବିଘ୍ନରେ ନିଜ ପାର୍ଟି ବା ଦଳ ସପକ୍ଷରେ ନିଜର ମତ ବ୍ୟକ୍ତ କରନ୍ତି । ଭାବିଚିନ୍ତି କୌଣସି କଥା କହନ୍ତି ନାହିଁ । ସେମାନଙ୍କର ତଥାକଥିତ ଦଳଗତ ଶୃଙ୍ଖଳା ସେମାନଙ୍କୁ ବାନ୍ଧି ରଖିଥାଏ । ଯଦି କୌଣସି ସଦସ୍ୟ ଏହି ଧାରାରେ ବ୍ୟତିକ୍ରମ ଘଟାଇ ନିଜର ସ୍ୱାଧୀନ ମତ ବ୍ୟକ୍ତ କରନ୍ତି, ତେବେ ସେ ବିଧର୍ମୀ, ବିଶ୍ୱାସଘାତକ ବା ଗୋଠଛଣ୍ଡିଆ ରୂପେ ଗଣ୍ୟ ହୁଅନ୍ତି । ପାର୍ଲମେଣ୍ଟ ଯେତେ ସମୟ ଓ ପଇସା ଖରଚ କରୁଛି, ତାହା ଯଦି କୌଣସି ଭଲ ଲୋକଙ୍କର ଦାୟିତ୍ୱରେ ଦିଆଯାଇ ଥାଆନ୍ତା, ତେବେ ଇଂରେଜ ଜାତି ଆହୁରି ଅଧିକ ଉନ୍ନତ ସ୍ତରରେ ଥାନ୍ତା । ପାର୍ଲମେଣ୍ଟ ବ୍ରିଟିଶ ଜାତିର ଗୋଟିଏ ଦାମିକା ଖେଳନା ମାତ୍ର । ଏଗୁଡ଼ାକ ଖାସ୍ ମୋହରି ମତ ବୋଲି ଆପଣ ଭାବନ୍ତୁ ନାହିଁ । ଇଂଲଣ୍ଡରେ ବଡ଼ ବଡ଼ ବିଚାରବାନ୍ ଲୋକେ ଏହି ମତ ବ୍ୟକ୍ତ କରିଛନ୍ତି । ଅପ୍ରତି ପାର୍ଲମେଣ୍ଟର ଜଣେ ସଦସ୍ୟ କହିଛନ୍ତି ଯେ କୌଣସି ଖାଣ୍ଟି ଖ୍ରୀଷ୍ଟିଆନ ପାର୍ଲମେଣ୍ଟର ସଦସ୍ୟ ହୋଇପାରିବ ନାହିଁ । ଆଉ ଜଣେ ସଦସ୍ୟ କହିଲେ— ପାର୍ଲମେଣ୍ଟ ଗୋଟିଏ ଶିଶୁ । ସାତ ଶହ ବର୍ଷ ବିତିଯିବା ପରେ ଯଦି ଏ ପାର୍ଲମେଣ୍ଟ ଶିଶୁ ହୋଇ ରହିଲା, ତେବେ ତାହାର ଏ ଶୈଶବାବସ୍ଥା କେବେ ଘୁଂଚିବ ?

ପାଠକ—ଆପଣ ତ ମୋତେ ଚିନ୍ତାରେ ପକେଇଦେଲେ । ଆପଣଙ୍କ ସହିତ ସବୁ କଥାରେ ମୁଁ ତୁରନ୍ତ ଏକମତ ହୋଇ

ଯିବାକୁ ଆପଣ କହୁବେ ନାହିଁ । ଆପଣ ସମ୍ପୂର୍ଣ୍ଣ ନୂଆ ଦୃଷ୍ଟିକୋଣ ମୋ ଆଗରେ ଥୋଇଛନ୍ତି । ମୋତେ ସେଗୁଡ଼ିକୁ ହଜମ କରିବାକୁ ପଡ଼ିବ । ଆଚ୍ଛା ବର୍ତ୍ତମାନ ଆପଣ "ବାରବନିତା" ଆଖ୍ୟାକୁ ବୁଝାଇ କୁହନ୍ତୁ ।

ସମ୍ପାଦକ—ମୋ ବକ୍ତବ୍ୟର ସହିତ ଆପଣ ଯେ ଭୁରନ୍ତ ଏକମତ ହୋଇପାରିବେ ନାହିଁ, ସେ କଥା ଠିକ୍ । ଏ ସମ୍ପର୍କରେ ବହିପତ୍ର ଆପଣ ପଢ଼ିଲେ, ସେ ବିଷୟରେ ଆପଣଙ୍କର କିଛି ଧାରଣା ହେବ । ପାର୍ଲାମେଣ୍ଟକୁ ମୁଁ ଯେ ବାରବନିତା କହିଲି ସେ ଉପମା ଠିକ୍ ପାର୍ଲାମେଣ୍ଟର ପ୍ରକୃତ ମାଲିକ କେହି ନାହାନ୍ତି । କେହି ଜଣେ ତାର ମାଲିକ ହୋଇ ପାରିବେ ନାହିଁ । ମାତ୍ର ମୋ କଥାର ଉଦ୍ଦେଶ୍ୟ କେବଳ ଏତିକି ନୁହେଁ । ଯେତେବେଳେ କେହି ଜଣେ, ଯଥା ବ୍ରିଟିଶ ପ୍ରଧାନମନ୍ତ୍ରୀ, ତାହାର ମାଲିକ ହୁଅନ୍ତି, ସେତେବେଳେ ମଧ୍ୟ ତାର ଗୃହଚଳନ ଏକପ୍ରକାର ନ ଥାଏ । ତେଣୁ ପାର୍ଲାମେଣ୍ଟ ବାରବନିତାର ଦଶା ଭୋଗ କରେ । ପ୍ରଧାନ ମନ୍ତ୍ରୀଙ୍କର ପାର୍ଲାମେଣ୍ଟ ପାଇଁ କୌଣସି ଚିନ୍ତା ନ ଥାଏ । ସେ ତ ନିଜ କ୍ଷମତାମଦରେ ଭୋଳ ହୋଇ ରହିଥାନ୍ତି । ତାଙ୍କ ଦଳଟି କିପରି ଜିତିବ, ସେଥିରେ ସେ ନିଜର ସବୁ ଶକ୍ତି ଖଟାନ୍ତି । ପାର୍ଲାମେଣ୍ଟ କିପରି ନ୍ୟାୟସଙ୍ଗତ ବା ଯଥାର୍ଥ କାମ କରିବ, ସେ ବିଷୟରେ ସେ ସବୁବେଳେ ସଚେତନ ରହନ୍ତି ନାହିଁ । ନିଜ ଦଳକୁ ଶକ୍ତିଶାଳୀ କରିବା ପାଇଁ ବା ସେହି ଦଳର ସ୍ୱାର୍ଥ ସାଧନ ପାଇଁ ପ୍ରଧାନ ମନ୍ତ୍ରୀ ପାର୍ଲାମେଣ୍ଟ ଦ୍ୱାରା କିପରି କାର୍ଯ୍ୟ କରାଇ ନିଅନ୍ତି, ତାହାର ଯେତିକି ଇଚ୍ଛା ସେତିକି ଉଦାହରଣ ଦିଆଯାଇ ପାରିବ । ଏ ସବୁ ଭାବିବାର କଥା ।

ପାଠକ—ତାହାହେଲେ ତ ଆମେ ଆଜଯାଏ ଯେଉଁମାନଙ୍କୁ ଦେଶପ୍ରେମୀ ଓ ସଚ୍ଚୋଟ ବୋଲି ବିଚାରୁଥିଲୁଁ, ଆପଣ ସେହି-ମାନଙ୍କ ଉପରେ ଆକ୍ରମଣ କଲେଣି ।

ସଂପାଦକ—ହଁ, ସେ କଥା ସତ । ପ୍ରଧାନମନ୍ତ୍ରୀଙ୍କ ପ୍ରତି ମୋର କୌଣସି ବିଦ୍ୱେଷ ଭାବ ନାହିଁ । ମାତ୍ର ମୁଁ ଯାହା ଦେଖିଛି, ସେଥିରୁ ସେମାନଙ୍କୁ ପ୍ରକୃତରେ ଖାଣ୍ଟି ଦେଶପ୍ରେମୀ କହି ହେବ ନାହିଁ । ସାଧାରଣତଃ ଯାହାକୁ ଲାଞ୍ଚ କୁହାଯାଏ, ସେ ପ୍ରକାରର ଲାଞ୍ଚ ସେମାନେ ଖୋଲାଖୋଲି ଭାବରେ ଦିଆନିଆ କରନ୍ତି ନାହିଁ । ସେହି ଦୃଷ୍ଟିରୁ ସେମାନଙ୍କୁ ସଚ୍ଚୋଟ କୁହାଯାଇ ପାରେ । ମାତ୍ର, ସେମାନେ ସୂକ୍ଷ୍ମ ଉପାୟରେ ପ୍ରଭାବିତ ହୁଅନ୍ତି । ସୁପାରିଶ କରିପାରନ୍ତି ଏବଂ ଅନ୍ୟମାନଙ୍କଠାରୁ କାମ ହାସଲ କରିବା ପାଇଁ ଉପାଧି, ସମ୍ମାନ ଆଦି ଆକାରରେ ଲାଞ୍ଚ ଦିଅନ୍ତି । ସେମାନଙ୍କଠାରେ ଯେ ପ୍ରକୃତ ସଚ୍ଚୋଟ ପଣିଆ ଓ ବିବେକଜ୍ଞାନ ନ ଥାଏ, ଏ କଥା କହିବାକୁ ମୁଁ ଦ୍ୱିଧା କରିବି ନାହିଁ ।

ପାଠକ—ପାର୍ଲିମେଣ୍ଟ ବିଷୟରେ ଆପଣ ଯେପରି ମତ କଲେ, ସେପରି ଇଂରେଜମାନଙ୍କ ବିଷୟରେ ମୁଁ ଆପଣଙ୍କଠାରୁ କିଛି ଶୁଣିବାକୁ ଚାହେଁ । ତାହାହେଲେ ସେମାନଙ୍କର ଶାସନ ସମ୍ବନ୍ଧରେ ଆପଣଙ୍କର ମତ ମୁଁ ଜାଣି ପାରିବି ।

ସଂପାଦକ—ଇଂରେଜ ଭୋଟରମାନଙ୍କର ଧର୍ମଗ୍ରନ୍ଥ ହେଲା ସେମାନଙ୍କର ଖବରକାଗଜ । ସେହି ଖବର କାଗଜରୁ ସେମାନେ ନିଜ ନିଜ ମତ ଓ ଆଚରଣ ସ୍ଥିର କରନ୍ତି ଏବଂ ଏ ଖବର କାଗଜ-ଗୁଡ଼ିକ ଅନେକ ସମୟରେ ଅସାଧୁ । ଏକା କଥାକୁ ବିଭିନ୍ନ

ଖବରକାଗଜ ବିଭିନ୍ନ ପ୍ରକାରର ବ୍ୟାଖ୍ୟା କରନ୍ତି । ଯେଉଁ ଖବର-କାଗଜ ଯେଉଁ ଦଳର ମୁଖପତ୍ର, ସେ ସେହି ଦଳର ସ୍ୱାର୍ଥ ଅନୁସାରେ ସେ କଥାର ଅର୍ଥ କରନ୍ତି । ଗୋଟିଏ ଦଳର ଖବର କାଗଜ ଯେଉଁ କଥାଟାକୁ ବଡ଼ କରି କହେ, ଅନ୍ୟଦଳର ଖବର-କାଗଜ ତାହାକୁ ଗୌଣ କରି ଦେଖାଏ । ଗୋଟିଏ ଖବରକାଗଜ ଯଦି କୌଣସି ଇଂରେଜ ନେତାଙ୍କୁ ସାଧୁତାର ଶିରୋମଣି କହିଲାଣି, ତେବେ ଆଉ ଗୋଟିଏ ଖବରକାଗଜ ତାଙ୍କୁ ଅସାଧୁ ରୂପେ ଚିତ୍ର କଲାଣି । ଯେଉଁ ଦେଶର ଖବରକାଗଜଗୁଡ଼କ ଏହି ଧରଣର, ସେ ଦେଶର ଜନସାଧାରଣଙ୍କ ଦଶା ଆଉ କ'ଣ ହେବ ?

ପାଠକ—ସେମାନଙ୍କ କଥା ମଧ୍ୟ ଆପଣ କହନ୍ତୁ ।

ସମ୍ପାଦକ—ସେମାନଙ୍କ ବିଚାର ଘଡ଼ିକ ଘଡ଼ି ବଦଳୁ ଥାଏ । ଲୋକେ କହନ୍ତି ଯେ ସାତ ବର୍ଷରେ ସେମାନଙ୍କ ମତ ବଦଳିଯାଏ । ଘଡ଼ିର ପେଣ୍ଡୁଲମ୍ ପରି ସେମାନଙ୍କର ମତ ଦୋହଲୁଥାଏ ଏବଂ ସେମାନେ କୌଣସିଥିରେ ଦୃଢ଼ ରହନ୍ତି ନାହିଁ । କୌଣସି ଶକ୍ତିଶାଳୀ ବକ୍ତାଙ୍କୁ ଅନୁସରଣ କରନ୍ତି ବା ଯେ ଭୋଜିଭାତ, ସମ୍ବର୍ଦ୍ଧନା ଆଦି ଦିଅନ୍ତି, ଲୋକେ ତାହାରି ଢୋଲ ପିଟନ୍ତି । ସେଠା ଲୋକେ ଯେପରି, ସେମାନଙ୍କ ପାର୍ଲାମେଣ୍ଟ ମଧ୍ୟ ସେହିପରି । ତେବେ ସେମାନଙ୍କ ମଧ୍ୟରେ ଗୋଟିଏ ଗୁଣ ବିଶେଷ ଭାବରେ ବିକଶିତ ହୋଇଅଛି । ତାହା ହେଉଛି, ସେମାନେ ନିଜ ଦେଶକୁ କଦାପି ପରାଜିତ ହେବାକୁ ଦେବେ ନାହିଁ । କେହି ଯଦି ସେମାନଙ୍କ ଦେଶ ଉପରେ କୁଦୃଷ୍ଟି ପକାଇବ, ତେବେ ସେମାନେ ତା'ର ଆଖିକୁ ଟାଣି ନେବେ । କିନ୍ତୁ ଏହାର ଅର୍ଥ ନୁହେଁ ଯେ, ସେହି ଜାତିର ପ୍ରତ୍ୟେକ ଗୁଣ ଭଲ ବା ସେ ଜାତିକୁ ଅନୁକରଣ କରିବା

ଆମର ଉଚିତ ହେବ । ଭାରତବର୍ଷ ଯଦି ଇଂରେଜ ଜାତିକୁ ଅନୁକରଣ କରିବ, ତେବେ ମୋର ଦୃଢ଼ ଧାରଣା ଯେ ଭାରତ ଧ୍ୱଂସ ହୋଇଯିବ ।

ପାଠକ — ଆପଣଙ୍କ ବିଚାରରେ ଇଂରେଜ ଜାତିର ଏ ଅବସ୍ଥାର କାରଣ କଅଣ ?

ସମ୍ପାଦକ ଇଂରେଜମାନଙ୍କର କୌଣସି ବିଶେଷ ଦୋଷ ହେତୁରୁ ଏହା ଘଟି ନାହିଁ । ଆଧୁନିକ ସଭ୍ୟତା ଏଥିପାଇଁ ଦାୟୀ । ଏହା ନାମକୁ ମାତ୍ର ସଭ୍ୟତା । ଏହି ସଭ୍ୟତା ଦୋଷରୁ ଦିନକୁ ଦିନ ଇଉରୋପର ଦେଶଗୁଡ଼ିକର ଅଧଃପତନ ଓ ସର୍ବନାଶ ହେଉଛି ।

# ସଭ୍ୟତାର ସ୍ୱରୂପ

ପାଠକ—ସଭ୍ୟତା ବା ସଂସ୍କୃତି କହିଲେ ଆପଣ କ'ଣ ବୁଝନ୍ତି, ତାହା ବର୍ତ୍ତମାନ ବୁଝାଇ କହନ୍ତୁ ।

ସଂପାଦକ—କେବଳ ମୋ ମତରେ ନୁହେଁ, ଉପରନ୍ତୁ କେତେକ ଇଂରେଜ ଲେଖକ ମଧ୍ୟ ଏ ସଂସ୍କୃତିକୁ ସଂସ୍କୃତି କହିବାକୁ ନାରାଜ । ଏ ବିଷୟରେ ବହୁତ ବହି ଲେଖାହୋଇଛି । ସେ ଦେଶକୁ ଏ ସଭ୍ୟତାରୂପୀ ରୋଗରୁ ମୁକ୍ତ କରିବାପାଇଁ ଅନେକ ସମିତି ମଧ୍ୟ ଗଢ଼ା ହୋଇସାରିଛି । ଜଣେ ବଡ଼ ଇଂରେଜ ଲେଖକ "ସଭ୍ୟତା, ତାହାର କାରଣ ଓ ତାହାର ପ୍ରତିକାର" ନାମକ ଖଣ୍ଡେ ବହି ଲେଖିଛନ୍ତି । ସେଥିରେ ସେ ଏ ସଭ୍ୟତାକୁ ଗୋଟିଏ ବ୍ୟାଧି କହିଛନ୍ତି ।

ପାଠକ—ଆମେ କାହିଁକି ଏ କଥାଗୁଡ଼ାକ ଜାଣିପାରୁ ନାହୁଁ ?

ସଂପାଦକ—ଏହାର କାରଣ ତ ଅତି ସ୍ପଷ୍ଟ । କୌଣସି ଦେଶର ଲୋକେ ନିଜ ବିରୋଧରେ କଥା କହିବା କ୍ୱଚିତ୍ ଦେଖାଯାଏ । ଆଧୁନିକ ସଭ୍ୟତାର ମୋହରେ ବିଭୋର ହୋଇ ରହିଥିବା ଲୋକେ ତାହା ବିରୋଧରେ ଲେଖିବା ଆଶା କରାଯାଏ ନାହିଁ । ବରଂ ଓଲଟା, ସେମାନେ ଏ ସଭ୍ୟତାକୁ ସମର୍ଥନ କରୁଥିବା ତଥ୍ୟ ଓ ଯୁକ୍ତି ଖୋଜ ବାହାର କରିବାକୁ ଯତ୍ନ କରନ୍ତି । ସେମାନେ ଯେ ଏ କଥା ଜାଣିଶୁଣି କରୁଛନ୍ତି, ତାହା ନୁହେଁ ।

ସେମାନେ ଯାହା ଠିକ୍ ବୋଲି ମନେ କରୁଛନ୍ତି, ତାହାହିଁ ଲେଖୁଛନ୍ତି । ମନୁଷ୍ୟ ସ୍ୱପ୍ନ ଦେଖିବାବେଳେ ତାକୁ ସତ ମଣେ । ନିଦ ଭାଙ୍ଗିଗଲା ପରେ ସେ ତାହାର ଭୁଲ୍ ବୁଝିପାରେ । ସଭ୍ୟତାର ମୋହରେ ଆଚ୍ଛନ୍ନ ରହିଥିବା ଲୋକଙ୍କର ଅବସ୍ଥା ମଧ୍ୟ ଠିକ୍ ଏହିପରି ହୋଇଛି । ଆମେ ଯାହା ସାଧାରଣତଃ ପଢ଼ୁଁ, ତାହା ହେଉଛି ଏ ସଭ୍ୟତାକୁ ସମର୍ଥନ କରୁଥିବା ଲୋକଙ୍କର ଲେଖା । ଏ ସଭ୍ୟତାର ଭକ୍ତମାନଙ୍କ ମଧ୍ୟରେ ବହୁତ ବୁଦ୍ଧିମାନ୍ ଓ ଭଲ ଲୋକ ଅଛନ୍ତି । ସେମାନଙ୍କର ଲେଖା ଆମକୁ ମନ୍ତ୍ରମୁଗ୍ଧ କରିଦିଏ । ଫଳରେ ଆମେ ଗୋଟି ଗୋଟି ହୋଇ ସେହି ଭଉଁରିରେ ପଡ଼ି ଯାଉଛୁଁ ।

ପାଠକ—ଏହା ଅତ୍ୟନ୍ତ ଯୁକ୍ତିସଙ୍ଗତ ବୋଧ ହେଉଛି । ଆପଣ ଏ ସଭ୍ୟତା ବିଷୟରେ ଯାହା ପଢ଼ିଛନ୍ତି ଓ ଭାବିଛନ୍ତି, ସେ ବିଷୟରେ କିଛି କହନ୍ତୁ ।

ସମ୍ପାଦକ—'ସଭ୍ୟତା' ବୋଇଲେ କଅଣ ବୁଝାଏ, ପ୍ରଥମେ ଆମେ ସେହି ବିଷୟରେ ବିଚାର କରିବା । ଏ ସଭ୍ୟତାର ପ୍ରଥମ ଲକ୍ଷଣ ହେଉଛି ଲୋକେ ଶାରୀରିକ ସୁଖ ସ୍ୱାଚ୍ଛନ୍ଦ୍ୟକୁ ଜୀବନର ଧ୍ୟେୟ ମଣୁଛନ୍ତି । ଉଦାହରଣ ସ୍ୱରୂପ, ଶହେବର୍ଷ ପୂର୍ବେ ୟୁରୋପର ଲୋକେ ଯେଉଁପରି ଘରେ ରହୁଥିଲେ, ବର୍ତ୍ତମାନ ତାହାଠାରୁ ଢେର ଭଲ ଘରେ ରହୁଛନ୍ତି । ଏଇଟା ସଭ୍ୟତାର ଲକ୍ଷଣ ବୋଲି ଧରାଯାଉଛି ଏବଂ ଏଥିରେ ଶାରୀରିକ ସୁଖ-ସ୍ୱାଚ୍ଛନ୍ଦ୍ୟର ଅଭିବୃଦ୍ଧି କଥା ଅଛି । ଏହା ପୂର୍ବରୁ ଲୋକେ ଚମଡ଼ାର ପୋଷାକ ପିନ୍ଧୁଥିଲେ ଓ ଅସ୍ତ୍ରରୂପେ ବର୍ଚ୍ଛା ବ୍ୟବହାର କରୁଥିଲେ । ଏବେ ସେମାନେ ଲମ୍ବା ପାଇଜାମା ପିନ୍ଧୁଛନ୍ତି ଓ ଦେହକୁ ସଜାଇବା

ପାଇଁ ଭଲକଭଲ ପୋଷାକ ପିନ୍ଧୁଛନ୍ତି । ବର୍ଚ୍ଛା ବଦଳରେ ୫ ବା ୬ ଟା ଗୁଳ ଉଦ୍ଗାରୁଥିବା ରିଭଲ୍‌ଭର୍ ବ୍ୟବହାର କରୁଛନ୍ତି । ପୂର୍ବେ ବେଶୀ ଲୁଗାପଟା, ବୁଟ୍‌ଜୋତା, ଆଦି ପିନ୍ଧିବାରେ ଅଭ୍ୟସ୍ତ ନ ଥିବା ଲୋକେ ୟୁରୋପୀୟ ପୋଷାକ ପିନ୍ଧି ଶିଖିଲେ, ସେମାନେ ଅସଭ୍ୟ ଅବସ୍ଥାରୁ ସଭ୍ୟ ହୋଇଗଲେ ବୋଲି ଧରି ନିଆଯାଏ । ପୂର୍ବେ ୟୁରୋପର ଲୋକେ ନିଜ ଦେହ-ସିହନ୍ତ କରି ଜମିରେ ହଳ କରୁଥିଲେ । ବର୍ତ୍ତମାନ ତାହା ପରିବର୍ତ୍ତେ ବାଷ୍ପଚାଳିତ ଇଞ୍ଜିନ ସାହାଯ୍ୟରେ ହଳକରି ଜଣେ ଲୋକ ବହୁତ ଜମି ଚଷି-ପାରୁଛି ଓ ବହୁତ ସମ୍ପତ୍ତି ଠୂଳ କରି ପାରୁଛି । ଏହାକୁ ସଭ୍ୟତାର ଲକ୍ଷଣ କୁହାଯାଉଛି । ପୂର୍ବେ ଅଳ୍ପ କେତେକ ଲୋକ ଅମୂଲ୍ୟ ବହି ଲେଖୁଥିଲେ । ଆଜିକାଲି ଯେ କୌଣସି ଲୋକ ଯାହା ଇଚ୍ଛା ତାହା ଲେଖୁଛି, ଛାପୁଛି ଓ ଲୋକଙ୍କ ମନକୁ ଦୂଷିତ ବା ବିଷାକ୍ତ କରି ଦେଉଛି । ଏଇଟା ସଭ୍ୟତାର ଲକ୍ଷଣ । ପୂର୍ବେ ଲୋକେ ବଳଦ-ଗାଡ଼ିରେ ଦିନକୁ ବାରକୋଶ ପର୍ଯ୍ୟନ୍ତ ବାଟ ଯାଇପାରୁଥିଲେ, ଏବେ ରେଳଗାଡ଼ିରେ ବା ଉଡ଼ାଜାହାଜରେ ଚାରିଶହ ମାଇଲ ଯାଉଛନ୍ତି । ଏହାକୁ ସଭ୍ୟତାର ଚରମ ସୀମାବୋଲି ଲୋକେ ଭାବୁଛନ୍ତି । ଆହୁରି ମଧ୍ୟ କୁହାଯାଉଛି ଯେ ଏ ସଭ୍ୟତା ଯେତେ-ବେଳେ ଆହୁରି ଅଗ୍ରଗତି କରିବ, ସେତେବେଳେ ମନୁଷ୍ୟ ଉଡ଼ାହାଜରେ ଗସ୍ତ କରିବ ଓ ପୃଥିବୀରେ ଯେ କୌଣସି ଦେଶରେ ପହଞ୍ଚିବାକୁ ମାତ୍ର ଅଳ୍ପ କେତେ ଘଣ୍ଟା ସମୟ ଲାଗିବ । ହାତ ଗୋଡ଼କୁ କାମରେ ଲଗାଇବା ଆଉ ଦରକାର ହେବ ନାହିଁ । ଗୋଟିଏ ବୋତାମ ଟିପିଦେଲେ ପିନ୍ଧିବା ପୋଷାକ ଆସି ଆଗରେ ଦାଖଲ ହୋଇଯିବ । ଆଉ ଗୋଟିଏ ବୋତାମ ଟିପିଦେଲେ ଖବରକାଗଜ ଆସିଯିବ । ତୃତୀୟ ବୋତାମଟା ଟିପିଦେଲେ

ମଟରଗାଡ଼ି ଆସି ଛୁଡ଼ା ହୋଇଯିବ । ପ୍ରତ୍ୟହ ନୂଆ ନୂଆ ସୁସ୍ୱାଦୁ ଖାଦ୍ୟ ଖାଇବାକୁ ମିଳିବ । ସବୁ କାମ କଳଦ୍ୱାରା ହୋଇଯିବ । ପୂର୍ବେ ଲୋକେ ଲଢ଼ିବାକୁ ଇଚ୍ଛାକଲେ, ପରସ୍ପରର ଦେହ-ବଳ କଷାକଷି ହେଉଥିଲେ । ଏବେ ଜଣେ ଲୋକ ଗୋଟାଏ ତୋପରେ ହଜାର ହଜାର ଲୋକଙ୍କୁ ମାରିଦେଇପାରେ । ଏ ହେଉଛି ସଭ୍ୟତା । ପୂର୍ବେ ଲୋକମାନଙ୍କର ଯେତିକି ଇଚ୍ଛା ହେଉଥିଲା, ସେତିକି କାମ ସେମାନେ ମୁକ୍ତ ସ୍ଥାନରେ କରୁଥିଲେ । ଆଜିକାଲି ହଜାର ହଜାର ମୂଲିଆ ପେଟ ପୋଷିବା ପାଇଁ ବଡ଼ ବଡ଼ କାରଖାନା ଓ ଖଣିରେ କାମ କରୁଛନ୍ତି । ସେମାନେ ପଶୁଗୁଡ଼ିକର ଅବସ୍ଥାଠାରୁ ବଳି ହୀନ ଅବସ୍ଥାରେ ରହୁଛନ୍ତି । କୋଟିପତିମାନଙ୍କର ଲାଭ ଉଦ୍ଦେଶ୍ୟରେ ସେମାନଙ୍କୁ କାରଖାନାମାନଙ୍କରେ ନିଜ ଜୀବନକୁ ବିପନ୍ନ କରି କାମ କରିବାକୁ ପଡ଼ୁଛି । ପୂର୍ବେ ଲୋକଙ୍କୁ ଦୈହିକ ବଳପ୍ରୟୋଗ ଦ୍ୱାରା ଜୋର ଜବରଦସ୍ତି କରି ଗୋଲାମ କରାଯାଉଥିଲା । ଆଜିକାଲି ପଇସା ଓ ପଇସା ଦ୍ୱାରା ଯେଉଁ ଭୋଗବିଳାସ ମିଳିପାରିବ, ତାହାର ପ୍ରଲୋଭନ ଦେଖାଇ ଲୋକଙ୍କୁ ଗୋଲାମ କରାଯାଉଛି । ପୂର୍ବେ ଯେଉଁ ରୋଗ ମଣିଷ ସ୍ୱପ୍ନରେ ସୁଦ୍ଧା କଳ୍ପନା କରିପାରୁ ନ ଥିଲା, ସେ ପ୍ରକାରର ରୋଗ ଆଜିକାଲି ଲୋକଙ୍କୁ ଧରୁଛି ଏବଂ ସେ ରୋଗର ପ୍ରତିକାର ବାହାର କରିବାପାଇଁ ପଲ ପଲ ଡାକ୍ତର ନିଯୁକ୍ତ ଅଛନ୍ତି । ଫଳରେ, ଡାକ୍ତରଖାନା ବଢ଼ି ଚାଲିଛି । ଏଇଟା ସଭ୍ୟତାର କଷୋଟି । ପୂର୍ବେ ଚିଠିପତ୍ର ପଠାଇବା ପାଇଁ ପତ୍ରବାହକ ଆବଶ୍ୟକ ପଡ଼ୁଥିଲା ଓ ସେଥିପାଇଁ ଖର୍ଚ୍ଚ ମଧ୍ୟ ବହୁତ ହେଉଥିଲା । ଆଜିକାଲି କାହାରିକୁ ଗାଳି ଦେବାକୁ ହେଲେ, ଚିଠି ଖଣ୍ଡିକ ଦ୍ୱାରା ସହଜେ ତାହା କରି ହେବ ଏବଂ ଏଥିପାଇଁ ମାତ୍ର ପଇସାଟିଏ ଖର୍ଚ୍ଚ ଲାଗିବ । ଏ କଥା ମଧ୍ୟ ସତ ଯେ କାହାରିକୁ

ଧନ୍ୟବାଦ ଦେବାକୁ ଇଚ୍ଛାକଲେ ମଧ୍ୟ ସେହି ଏକା ଖର୍ଚ୍ଚରେ ଧନ୍ୟବାଦପତ୍ର ପଠାଯାଇ ପାରିବ । ପୂର୍ବେ ଲୋକେ ନିଜ ଘରେ ନିଜ ହାତରେ ରୁଟି ତରକାରୀ ଦିନରେ ଦୁଇଥର ବା ତିନିଥର ଖାଉଥିଲେ, ଏବେ ତ ପ୍ରତି ଦୁଇ ଘଣ୍ଟାରେ ଥରେ ଖା'ଇବା ଦରକାର ପଡ଼ୁଛି ଏବଂ ସେଥିପାଇଁ ଲୋକଙ୍କୁ ଅନ୍ୟ କାମ କରିବାକୁ ଫୁରସତ୍ କାହିଁ ? ଆଉ କେତେ କହିବ ? ଏ ବିଷୟରେ ଲେଖା ହୋଇଥିବା କେତେକ ପ୍ରମାଣଯୁକ୍ତ ବହିରୁ ଏ ସବୁ ଆପଣ ଜାଣି ପାରିବେ । ଏଗୁଡ଼ିକ ହେଉଛି ସଭ୍ୟତାର ପ୍ରକୃତ ମାପକାଠି । କେହି ଯଦି ଏହାର ଓଲଟା ମତ ବ୍ୟକ୍ତ କଲା, ତେବେ ସେ ଜାଣନ୍ତୁ ଅଜ୍ଞ । ଏ ସଭ୍ୟତା ଧର୍ମ ବା ନୈତିକତାର ଧାର ଧାରେ ନାହିଁ । ଏହାର ଭକ୍ତ ବା ସମର୍ଥକମାନେ ସ୍ପଷ୍ଟ ଭାଷାରେ କହନ୍ତି ଯେ ଲୋକଙ୍କୁ ଧର୍ମଶିକ୍ଷା ଦେବା ସେମାନଙ୍କର କାମ ନୁହେଁ । ପୁଣି ସେମାନଙ୍କ ମଧ୍ୟରୁ ଅନେକେ ଧର୍ମକୁ ଅନ୍ଧ କୁସଂସ୍କାର ବୋଲି କୁହନ୍ତି । ଆଉ ଅନେକେ ଧାର୍ମିକତା ଓ ନୈତିକତା ଛଳନା କରନ୍ତି । ତଥାପି ମୋର କୋଡ଼ିଏ ବର୍ଷର ଅଭିଜ୍ଞତାରୁ ମୁଁ ଏହି ସିଦ୍ଧାନ୍ତରେ ଉପନୀତ ହୋଇଛି ଯେ ଏ ସଭ୍ୟତାରେ ନୈତିକତା ନାମରେ ଅନେକ ସମୟରେ ଅନୈତିକତା ଶିକ୍ଷା ଦିଆଯାଏ । ମୋର ଉପର୍ଯ୍ୟୁକ୍ତ କଥାରୁ ଜଣେ ଛୋଟ ପିଲା ସୁଦ୍ଧା ଏତିକ ବୁଝି ପାରିବ ଯେ ଏ ସଭ୍ୟତାରେ ନୈତିକତା ପାଇଁ କୌଣସି ଆକର୍ଷଣ ନାହିଁ । ଏ ଶାରୀରିକ ସୁଖ-ସ୍ୱାଚ୍ଛନ୍ଦ୍ୟ କିପରି ବେଶୀ ମିଳିବ, ସେହି କଥାଟା ଏ ସଭ୍ୟତା ଖୋଜି ବୁଲୁଛି । ମାତ୍ର ସେତିକ ସୁଦ୍ଧା କରିବାରେ ତାହା ଅପାରଗ ହୋଇଛି ।

ଏ ସଭ୍ୟତାରେ ଧର୍ମ ତ ନାହିଁ, ପୁଣି ତାହା ୟୁରୋପୀୟ-ମାନଙ୍କ ଭିତରେ ଏତେ ଦୂର ବ୍ୟାପି ଗଲାଣି ଯେ ସେଠା ଲୋକେ

ଅଧା ଗାଗଳ ହୋଇଗଲା ପରି ଜଣା ପଡ଼ୁଛନ୍ତି । ସେମାନଙ୍କ-ଠାରେ ପ୍ରକୃତ ସାହାସ ବା ଦୈହିକ ବଳ ନାହିଁ, ମାଦକ ଦ୍ରବ୍ୟ ବଳରେ ସେମାନେ ନିଜ ବଳ ଧାରଣ ବା ରକ୍ଷା କରନ୍ତି । ସେମାନେ ନିଜନ ସ୍ଥାନରେ ଏକାକୀ ରହିବାକୁ ପ୍ରାୟ ସୁଖ ପାଆନ୍ତି ନାହିଁ । ନାରୀଜାତି ନିଜ ନିଜ ଘରେ ରାଣୀ ହୋଇ ରହିବାର କଥା, ମାତ୍ର ହାଣ୍ଡି ଘାଟରେ ବୁଲୁଛନ୍ତି କିମ୍ବା ପେଟ ପୋଷିବା ପାଇଁ କଳକାରଖାନାରେ ଅତି କଠିନ ପରିଶ୍ରମ କରୁଛନ୍ତି । କେବଳ ଇଂଲ୍ୟାଣ୍ଡରେ ପ୍ରାୟ ପାଞ୍ଚ ଲକ୍ଷ ସ୍ତ୍ରୀଲୋକ କଷ୍ଟେମଷ୍ଟେ ପେଟ ପୋଷିବା ପାଇଁ ଫାକ୍ଟରୀ ବା ତଦ୍ରୂପ ସ୍ଥାନଗୁଡ଼ିକରେ କ୍ଲେଶମୟ ପରିସ୍ଥିତିରେ ମୂଲ ଲଗନ୍ତି । ଇଂଲଣ୍ଡରେ ନାରୀମାନଙ୍କର ରାଜ-ନୈତିକ ଭୋଟ ଦେବାର ଅଧିକାର ପାଇବାକୁ ଯେଉଁ ଆନ୍ଦୋଳନ ( suffragette movement ) ଦିନକୁ ଦିନ ବଢ଼ୁଛି, ତାହାର ଗୋଟିଏ ମୁଖ୍ୟ କାରଣ ହେଉଛି ଏହି ଦୁଃଖଦାୟକ ପରିସ୍ଥିତି ।

ଏ ସଭ୍ୟତା ଏପରି ଅବସ୍ଥାରେ ପହଞ୍ଚିଲାଣି ଯେ ଆମେ ଯଦି କେବଳ ଧୈର୍ଯ୍ୟ ସହକାରେ ଅପେକ୍ଷା କରିବୁ, ତେବେ ଏ ସଭ୍ୟତା ସ୍ୱୟଂ ସ୍ୱୟଂ ଧ୍ୱଂସ ପାଇଯିବ । ମହମ୍ମଦଙ୍କ ଧର୍ମୋପଦେଶ ଅନୁସାରେ ଏହାକୁ ଶଇତାନର ସଭ୍ୟତା କୁହାଯିବ । ହିନ୍ଦୁଧର୍ମ ଏହାକୁ କଳିଯୁଗ କହିବ । ଆପଣଙ୍କୁ ଏ ସଭ୍ୟତାର ପୂରା ଧାରଣା ଦେବାର ମୋର ସାଧ୍ୟ ନାହିଁ । ଏହା ଇଂରେଜ ଜାତିର ଜୀବନୀ-ଶକ୍ତିକୁ ଧ୍ୱଂସ କରି ଦେଉଛି । ଏହାକୁ ପରିହାର କରିବା ଉଚିତ । ଏହାଠାରୁ ଦୂରରେ ରହିବା ଉଚିତ । ବ୍ରିଟିଶ ପାର୍ଲିମେଣ୍ଟ ପ୍ରକୃତରେ ସେହି ଜାତିର ଦାସତ୍ୱର ପ୍ରତୀକ । ଏ ବିଷୟରେ ଗଭୀର ଭାବରେ ଚିନ୍ତାକଲେ ଆପଣ ମଧ୍ୟ ଏ ବିଷୟରେ ମୋ ସହିତ ଏକମତ ହେବେ ଏବଂ ଇଂରେଜମାନଙ୍କୁ

ଆଜି ହନ୍ଦା କରିବେ ନାହିଁ । ବରଂ ସେମାନେ ଆମର ସମବେଦନା ପାଇବାର ମାତ୍ର । ସେମାନେ ଚତୁର ଜାତି, ତେଣୁ ମୋର ବିଶ୍ବାସ, ଦିନେ ନା ଦିନେ ସେମାନେ ଏ ଅନିଷ୍ଟ ବା ଦୁରବସ୍ଥାକୁ ବର୍ଜନ କରିବେ । ସେମାନେ ସାହସୀ ଓ ପରିଶ୍ରମୀ । ସେମାନଙ୍କ ଚରିତ୍ର ମୂଳତଃ ଅନୈତିକ ନୁହେଁ, ଅନ୍ତରରେ ସେମାନେ ଦୁଷ୍ଟ ନୁହନ୍ତି । ସେଥିପାଇଁ ମୁଁ ସେ ଜାତିକୁ ସମ୍ମାନ କରେ । ଏ ସଭ୍ୟତା କିଛି ଦୁରାରୋଗ୍ୟ ବ୍ୟାଧି ନୁହେଁ, ମାତ୍ର ଆମେ ଯେପରି ଏକଥା ଆଦୌ ନ ଭୁଲୁଁ ଯେ ବର୍ତ୍ତମାନ ଇଂରେଜ ଜାତିକୁ ସେହି ସଭ୍ୟତାର ରୋଗ ଗ୍ରାସିଛି ।

# ଭାରତ ପରାଧୀନ ହେଲା କାହିଁକି ?

ପାଠକ – ମୋର ଚିନ୍ତନ-ମନନ ପାଇଁ ସଭ୍ୟତା ବିଷୟରେ ତ ଆପଣ ବହୁତ କହିଲେଣି । ୟୁରୋପୀୟ ରାଷ୍ଟ୍ରଗୁଡ଼ିକଠାରୁ ମୁଁ କଅଣ ଗ୍ରହଣ କରିବି ଓ କଅଣ ବର୍ଜନ କରିବି, ବର୍ତ୍ତମାନ ତାହା ମୁଁ ବୁଝିପାରୁ ନାହିଁ । କିନ୍ତୁ ଗୋଟିଏ ପ୍ରଶ୍ନ ମୋ ଜିଭ ଅଗରେ ରହିଛି । ଯଦି ସଭ୍ୟତା ପ୍ରକୃତରେ ଗୋଟିଏ ବିକୃତି ବା ରୋଗ, ଓ ଇଂଲାଣ୍ଡ ସେଥିରେ ଆକ୍ରାନ୍ତ, ତେବେ ଇଂରେଜମାନେ ଭାରତକୁ ଅଧିକାର କଲେ କିପରି ? ଏବଂ ତାକୁ ଦଖଲରେ ରଖିଛନ୍ତି କିପରି ?

ସଂପାଦକ - ଆପଣଙ୍କର ଏ ପ୍ରଶ୍ନର ଉତ୍ତର ଦେବା ବେଶୀ କଠିନ ନୁହେଁ । ଆମେ ଏଥର ପ୍ରକୃତ ସ୍ୱରାଜ୍ୟ ସମ୍ବନ୍ଧରେ ସତ୍ୱର ବିଚାର କରି ପାରିବା । ଆପଣଙ୍କର ସେହି ପ୍ରଶ୍ନର ଜବାବ ଦେବା ଯେ ବାକି ଅଛି, ତାହା ମୁଁ ଭୁଲି ଯାଇନାହିଁ । ଯାହାହେଉ, ମୁଁ ଆପଣଙ୍କୁ ପୂର୍ବ ପ୍ରଶ୍ନର ଉତ୍ତର ବର୍ତ୍ତମାନ ଦେବି । ଇଂରେଜମାନେ ଭାରତ-ବର୍ଷକୁ ଅଧିକାର କରି ନାହାନ୍ତି, ବରଂ ଆମେ ସେମାନଙ୍କ ହାତକୁ ତାକୁ ଟେକି ଦେଇଛୁ । ସେମାନଙ୍କର ନିଜ ବଳରେ ଭାରତରେ ସେମାନେ ତିଷ୍ଠି ନାହାନ୍ତି, ଆମେ ସେମାନଙ୍କୁ ଏଠାରେ ରଖିଛୁ । ମୋର ଏ ବକ୍ତବ୍ୟ ପ୍ରକୃତରେ ଠିକ୍ କି, ଚାଲନ୍ତୁ ବିଚାର କରିବା । ମୁଁ ଆପଣଙ୍କୁ ସ୍ମରଣ କରେଇ ଦେଉଛି ଯେ, ଇଂରେଜମାନେ ବାସ୍ତବରେ ବାଣିଜ୍ୟ- ବ୍ୟବସାୟ କରିବାକୁ ଭାରତକୁ ଆସିଥିଲେ ।

କମ୍ପାନୀ ବାହାଦୁରଙ୍କ କଥା ମନେ ପକାନ୍ତୁ । ତାଙ୍କୁ ବାହାଦୁର କିଏ କଲା ? ସେ ସମୟରେ ଏଠାରେ ରାଜ୍ୟ ସ୍ଥାପନ କରିବାର ଅଭିପ୍ରାୟ ସେମାନେ ମୂଳରୁ ମନକୁ ଆଣି ନ ଥିଲେ । କମ୍ପାନୀର ଅମଲମାନଙ୍କୁ କିଏ ସାହାଯ୍ୟ କଲା ? ତାଙ୍କର ସୁନା-ରୂପା ଦେଖିକରି କିଏ ପ୍ରଲୁବ୍ଧ ହେଲା ? ସେମାନଙ୍କ ପଣ୍ୟ-ଦ୍ରବ୍ୟ କେଉଁମାନେ କିଣିଲେ ? ଏ ସବୁ ଯେ ଆମେମାନେ ହିଁ କରିଥିଲୁଁ, ଏହା ଇତିହାସ ସାକ୍ଷ୍ୟ ଦେଉଛି । ତତ୍କାଳ ବଡ଼ଲୋକ ହୋଇଯିବା ଆଶାରେ ଆମେ ସେମାନଙ୍କୁ ସ୍ୱାଗତ କରି ଆଣିଲୁଁ । ଆମେ ସେମାନଙ୍କୁ ସାହାଯ୍ୟ କଲୁଁ । ମୋର ଯଦି ଭାଙ୍ଗ (ଗଞ୍ଜେଇ) ଖାଇବାର ଅଭ୍ୟାସ ଥିବ ଓ ଭାଙ୍ଗବେପାରୀ ମୋତେ ଭାଙ୍ଗ ବିକିବ, ତେବେ ମୁଁ ମେ ବେପାରୀକୁ ଦୋଷ ଦେବି, ନା, ନିଜକୁ ଦୋଷୀ କରିବି । ଭାଙ୍ଗ ବେପାରୀକୁ ଦୋଷ ଦେଲେ ମୋର ସେ ଅମଳ ଭାଙ୍ଗି ଯିବ କି ? ସେ ବେପାରୀକୁ ତଡ଼ିଦେଲେ, ଅନ୍ୟ ବେପାରୀ ମୋତେ ଭାଙ୍ଗ ବିକିବେ ନାହିଁ କି ? ଭାରତବର୍ଷର ସଚ୍ଚା ସେବକମାନଙ୍କୁ ଏ ସବୁକଥା ଖୋଳତାଡ଼ି ଏହାର ମୂଳ ବାହାର କରିବାକୁ ପଡ଼ିବ । ବେଶୀ ଖାଇକରି ମୋର ଅଜୀର୍ଣ୍ଣ ହେଲେ ମୁଁ ପାଣି ଉପରେ ଦୋଷ ଲଦିଦେଲେ ମୋ ଅଜୀର୍ଣ୍ଣ ଭଲ ହୋଇ ଯିବ ନାହିଁ । ପ୍ରକୃତ ବୈଦ୍ୟ ରୋଗର ମୂଳକୁ ଖୋଜିବ । ଆପଣ ଯଦି ଭାରତବର୍ଷର ରୋଗର ବୈଦ୍ୟ ହେବାକୁ ଇଚ୍ଛା କରନ୍ତି, ତେବେ ଆପଣଙ୍କୁ ତାହାର ରୋଗର ମୂଳ କାରଣ ବା ନିଦାନ ଖୋଜିବାକୁ ପଡ଼ିବ ।

ପାଠକ—ଆପଣ ଠିକ୍ କହୁଛନ୍ତି । ଏଥର ମୋତେ ବୁଝାଇବା ପାଇଁ ଆପଣଙ୍କୁ ଆଉ ଯୁକ୍ତି କରିବାକୁ ପଡ଼ିବ ନାହିଁ । ମୁଁ ଆପଣଙ୍କ ବିଚାର ଜାଣିବା ପାଇଁ ବ୍ୟଗ୍ର । ବର୍ତ୍ତମାନ ଆମେ

ରାଜ୍ୟକର୍ଷକ ବିଷୟ ଆଲୋଚନା କରିବାକୁ ବାହାରିଛୁଁ । ତେଣୁ ମୁଁ ଆପଣଙ୍କର ବକ୍ତୃତା ବୁଝିବାକୁ ମନ ଦେବି ଏବଂ ମୋ ମନରେ ସନ୍ଦେହ ଜନ୍ମିଲେ, ମୁଁ ଆପଣଙ୍କୁ ପୁଣି ପଚାରିବି ।

ସଂପାଦକ—ଭଲ କଥା । ମାତ୍ର ମୋର ଆଶଙ୍କା ହେଉଛି ଯେ ଆପଣଙ୍କର ଏ ମୂଳଉତ୍ପାଦସମ୍ବନ୍ଧେ ଆମର କଥାବାର୍ତ୍ତା ଆଜିକୁ ରହିଲେ ପୁଣି ଆମ ମଧ୍ୟରେ ମତଭେଦ ନିଶ୍ଚୟ ଦେଖାଦେବ । ତଥାପି ଆପଣ ଯେତେବେଳେ ମୋତେ ବାଧା ଦେବେ, ସେତିକବେଳେ ମୁଁ ପୁଣି ଯୁକ୍ତି ଆରମ୍ଭ କରିବି । ଆମେ ଆଗରୁ ଦେଖି ପାରିଛୁଁ ଯେ ଇଂରେଜ ବେପାରୀମାନଙ୍କୁ ଆମେ ଉତ୍ସାହ ଦେବାରୁ ଏ ଦେଶରେ ସେମାନେ ଠାବ ପାଇଲେ । ଆମ ଦେଶର ରାଜାମାନେ ଯେତେବେଳେ ଆପଣା ଆପଣା ମଧ୍ୟରେ କଳି ଓ ଯୁଦ୍ଧ କଲେ, ସେତେବେଳେ ସେମାନେ କମ୍ପାନୀ ବାହାଦୁରର ସାହାଯ୍ୟ ଲୋଡ଼ିଲେ । କମ୍ପାନୀ ବାହାଦୁର ବାଣିଜ୍ୟ-ବ୍ୟବସାୟ ଓ ଯୁଦ୍ଧ ଉଭୟ କାର୍ଯ୍ୟରେ ଧୁରନ୍ଧର ଥିଲେ । ସେ ବାବଦରେ ସେମାନଙ୍କର ସଂଗ୍ରାମ ଅସଂଗତର ଦ୍ୱିଧା ନ ଥିଲା । ବାଣିଜ୍ୟ ବ୍ୟବସାୟ ବଢ଼ାଇବା ଓ ପଇସା କମାଇବା ଥିଲା ସେମାନଙ୍କର ମୁଖ୍ୟ ଉଦ୍ଦେଶ୍ୟ । ସେ କାମରେ ଯେତେବେଳେ ଆମେ ସାହାଯ୍ୟ ସହଯୋଗ କଲୁଁ, ସେମାନେ ଆମ ସାହାଯ୍ୟ ନେଲେ ଏବଂ ସେମାନଙ୍କର ବାଣିଜ୍ୟ-କୋଠିର ସଂଖ୍ୟା ବଢ଼ାଇବାରେ ଲାଗିଲେ । ବାଣିଜ୍ୟ କୋଠିଗୁଡ଼ିକୁ ରକ୍ଷା କରିବା ପାଇଁ ସେମାନେ ସୈନ୍ୟ ରଖିଲେ । ସେହି ସୈନ୍ୟଙ୍କୁ ଆମେ କାମରେ ଲଗାଇଲୁ । ତେଣୁ ସେତେବେଳେ ଆମେ ଯାହା ସବୁ କଲୁଁ, ସେଥିପାଇଁ ଇଂରେଜଙ୍କୁ ନିନ୍ଦା କରିବା ନିରର୍ଥକ । ସେ ଯୁଗରେ ହିନ୍ଦୁ ମୁସଲମାନଙ୍କ ମଧ୍ୟରେ ଅହି-ନକୁଳ ସମ୍ପର୍କ ଥିଲା । କମ୍ପାନୀ ସେ ବିଭେଦର ସୁଯୋଗ ମଧ୍ୟ ନେଲେ । ଆମେ

ଏପରି ପରିସ୍ଥିତି ସୃଷ୍ଟି କଲୁଁ, ଯାହା ଫଳରେ ଭାରତ ଉପରେ କଂପାନୀ କର୍ତ୍ତୃତ୍ୱ ଜାରି କରିପାରିଲେ । ଅତଏବ ଭାରତବର୍ଷକୁ ଆମେ ହରାଇଲୁଁ, ଏହା କହିବା ବଦଳରେ ଆମେ ଇଂରେଜ-ମାନଙ୍କୁ ଭାରତବର୍ଷ ଦେଇ ଦେଲୁଁ କହିଲେ ବେଶୀ ଠିକ୍ ହେବ ।

ପାଠକ—ସେମାନେ ଭାରତବର୍ଷକୁ କିପରି ହାତରେ ରଖିପାରିଛନ୍ତି, ସେ କଥା ବର୍ତ୍ତମାନ କହନ୍ତୁ ।

ସମ୍ପାଦକ—ଯେଉଁ କାରଣଗୁଡ଼ିକରୁ ସେମାନେ ଭାରତ-ବର୍ଷକୁ ପାଇ ପାରିଲେ, ଠିକ୍ ସେହି କାରଣରୁ ସେମାନେ ତାକୁ ସେମାନଙ୍କର ହାତମୁଠାରେ ରଖି ପାରିଛନ୍ତି । ଅନେକ ଇଂରେଜ କହନ୍ତି ଯେ ସେମାନେ ଭାରତବର୍ଷକୁ ତରବାରି ଦ୍ୱାରା ଜୟ କରିଛନ୍ତି ଓ ସେହି ତରବାରି-ବଳରେ ରକ୍ଷା କରୁଛନ୍ତି । ମାତ୍ର ଏ ଦୁଇଟି ଯାକ କଥା ଭୁଲ । ଭାରତବର୍ଷକୁ ହାତମୁଠାରେ ରଖିବା ପାଇଁ ତରବାରି ପୂର୍ଣ୍ଣଭାବରେ ଅନାବଶ୍ୟକ । ଆମ୍ଭେମାନେ ହିଁ ସେମାନଙ୍କୁ ଏଠାରେ ରଖାଇଛୁ । ନେପୋଲିଅନ୍ ଯେ ଇଂରେଜଙ୍କୁ ବେପାରୀ ଜାତି କହିଥିଲେ, ସେଇଟା ପୁରାପୁରି ଠିକ୍ । ସେମାନେ ଯେତେ ଉପନିବେଶଗୁଡ଼ିକ ଆୟତ୍ତରେ ରଖିଛନ୍ତି, ସେଗୁଡ଼ିକ କେବଳ ସେମାନଙ୍କ ବେପାର ପାଇଁ । ସେମାନଙ୍କ ସୈନ୍ୟ-ବାହିନୀ ଓ ନୌସେନା କେବଳ ବାଣିଜ୍ୟ-ବ୍ୟବସାୟକୁ ରକ୍ଷା କରିବା ପାଇଁ ଉଦ୍ଦିଷ୍ଟ । ଟ୍ରାନ୍ସଭାଲରେ କୌଣସି ବ୍ୟବସାୟ-ବାଣିଜ୍ୟର ଆକର୍ଷଣ ନ ଦେଖି ଗ୍ଲାଡ଼ଷ୍ଟୋନ ଆବିଷ୍କାର କଲେ ଯେ ଟ୍ରାନସଭାଲକୁ ଇଂରେଜମାନଙ୍କର କର୍ତ୍ତୃତ୍ୱରେ ରଖିବା କିଛି ଦରକାର ନାହିଁ । ପୁଣି ଯେତେବେଳେ ଟ୍ରାନ୍ସଭାଲରେ ବ୍ୟବସାୟ-ବାଣିଜ୍ୟ ଚେତିଲା, ଲାଭଦାୟକ ହେଲା, ସେତେବେଳେ ତାହା

ସଙ୍ଗରେ ଯୁଦ୍ଧ ଲଗିଲା ଓ ସେହି ଗ୍ଳାଡ଼ଷ୍ଟୋନ୍ ପୁଣି ଆବିଷ୍କାର କଲେ ଯେ ଟ୍ରାନ୍‌ସଭାଲ ଉପରେ ଇଂଲ୍ୟାଣ୍ଡର ସାର୍ବଭୌମ ଅଧିକାର ଅଛି । ସ୍ବର୍ଗୀୟ ପ୍ରେସିଡେଣ୍ଟ କ୍ରୁଗାରଙ୍କୁ କେହି ଜଣେ ଚନ୍ଦ୍ରଲୋକରେ ସୁନା ଅଛି କି, ପଚାରିଲେ । ସେ ଉତ୍ତର ଦେଲେ, ଚନ୍ଦ୍ରଲୋକରେ ସୁନା ପ୍ରାପ୍ତ ନଥିବ, କାରଣ ଯଦି ସେଠାରେ ସୁନା ଥାଆନ୍ତା, ତେବେ ଇଂରେଜମାନେ ତାକୁ ନିଜ ସାମ୍ରାଜ୍ୟଭୁକ୍ତ କରି ସାରନ୍ତେଣି । ପଇସା ହିଁ ସେମାନଙ୍କ ଇଷ୍ଟଦେବତା-ଏହି କଥାଟି ମନେ ରଖିଲେ, ଅନେକ କଥା ଆପେ ଆପେ ପରିଷ୍କାର ବୁଝିହେବ । ତେବେ ଆମେ ଯେ ଇଂରେଜମାନଙ୍କୁ ଭାରତବର୍ଷରେ ରଖିଛୁଁ, ସେଇଟା କେବଳ ଆମ ନିଜର ହୀନ ସ୍ବାର୍ଥ ଦୃଷ୍ଟିରୁ । ସେମାନଙ୍କ ବେପାରକୁ ଆମେ ପସନ୍ଦ କରୁଛୁଁ । ସେମାନେ ଛଳବାଜି ଦ୍ୱାରା ଆମକୁ ଖୁସି କରି ଦେଇ ଆମଦ୍ୱାରା ସେମାନଙ୍କ କାମ ହାସଲ କରିନିଅନ୍ତି । ଏ ବିଷୟରେ ସେମାନଙ୍କୁ ଦୋଷ ଦେବାର ଅର୍ଥ ହେଉଛି ସେମାନଙ୍କର କ୍ଷମତାକୁ ଚିରସ୍ଥାୟୀ କରିବା । ଆମେ ଆପଣା ମଧ୍ୟରେ କଳିଗୋଳ ଲଗାଇ ଆମ ଉପରେ ସେମାନଙ୍କର ହାତମୁଠାକୁ ଦୃଢ଼ କରୁଛୁଁ ମାତ୍ର । ଆପଣ ଉପର୍ଯ୍ୟୁକ୍ତ କଥାଗୁଡ଼ିକୁ ଯଦି ଯୁକ୍ତିଯୁକ୍ତ ମନେକରନ୍ତି ତାହାହେଲେ ଇଂରେଜମାନେ ଯେ ବାଣିଜ୍ୟ କରିବାକୁ ଭାରତରେ ପ୍ରବେଶ କରିଥିଲେ, ତାହା ପ୍ରମାଣିତ ହୋଇଗଲା । ସେହି ଉଦ୍ଦେଶ୍ୟରେ ସେମାନେ ଅସ୍ତ୍ରଶସ୍ତ୍ର କୌଣସି କରିମତି ନାହିଁ । ଏହି ଅବସରରେ ମୁଁ ଆପଣଙ୍କୁ ସ୍ମରଣ କରାଇ ଦେଉଛି ଯେ ଜାପାନରେ ଇଂରେଜ ପତାକା ଉଡ଼ୁଛି ବୋଲି ଜାଣନ୍ତି । ଜାପାନ ସହିତ ଇଂରେଜମାନେ ଯେଉଁ ସନ୍ଧି କରିଛନ୍ତି, ତାହା କେବଳ ସେମାନଙ୍କ ବେପାର ପାଇଁ କରିଛନ୍ତି । ଆପଣ ଦେଖିବେ, ଜାପାନରେ ଇଂରେଜମାନେ ସେମାନଙ୍କ ବେପାର

ଭଲରୂପେ ଚଳାଇବେ । ଇଂରେଜମାନଙ୍କର ପଣ୍ୟଦ୍ରବ୍ୟ ପାଇଁ ସମଗ୍ର ପୃଥିବୀକୁ ନିଜର ବିକା-କଣା ବଜାରରେ ପରିଣତ କରିବାକୁ ଇଂରେଜମାନେ ଚାହୁଁଛନ୍ତି । ଏକଥା ଠିକ୍ ଯେ ସେମାନେ ତାହା କରିପାରିବେ ନାହିଁ । ମାତ୍ର ଏହା କରି ନ ପାରିବା ସେମାନଙ୍କର ତ୍ରୁଟି ନୁହେଁ । ଲକ୍ଷ୍ୟଲାଭ ପାଇଁ ସେମାନେ କୌଣସି ପ୍ରକାର ଉଦ୍ୟମ ବାକି ରଖିବେ ନାହିଁ ।

# ଭାରତବର୍ଷର ଅବସ୍ଥା-୧

ପାଠକ – ଭାରତବର୍ଷ ଇଂରେଜଙ୍କ ହାତରେ କାହିଁକି ରହିଛି, ସେ କଥାଟା ମୁଁ ଏବେ ବୁଝିଗଲି । ଭାରତବର୍ଷର ଅବସ୍ଥା ସମ୍ବନ୍ଧରେ ଆପଣଙ୍କ ବିଚାର ମୁଁ ଜାଣିବାକୁ ଚାହେଁ ।

ସମ୍ପାଦକ—ବର୍ତ୍ତମାନ ଭାରତବର୍ଷର ଅବସ୍ଥା ଅତି ଦୟନୀୟ । ଏ କଥା ଆପଣଙ୍କୁ କହିଲାବେଳକୁ ମୋତେ କାନ୍ଦ ମାଡ଼ୁଛି ଓ ମୋ ତଣ୍ଟି ଶୁଖିଯାଉଛି । ମୋ ହୃଦୟ କଥା ମୁଁ ଆପଣଙ୍କୁ ପୂରାପୂରି ବୁଝାଇ ପାରିବି କି ନାହିଁ ସେ ବିଷୟରେ ମୋର ସନ୍ଦେହ ହେଉଛି । ସୁଚିନ୍ତିତ ମତ ହେଉଛି ଯେ ଇଂରେଜମାନଙ୍କ ଦ୍ୱାରା ଭାରତବର୍ଷର ଏ ଦଶା ହୋଇ ନାହିଁ, ଆଧୁନିକ ସଭ୍ୟତା ହିଁ ଏ ଦେଶକୁ ପେଷି ଦେଉଛି । ଏହି ସଭ୍ୟତା ରୂପକ ରାକ୍ଷସର ଚାପରେ ଭାରତ ଆର୍ତ୍ତନାଦ କରୁଛି । ସେଥିରୁ ଉଧୁରିବା ପାଇଁ ବର୍ତ୍ତମାନ ସୁଦ୍ଧା ବେଳ ଅଛି ସତ୍ୟ, ମାତ୍ର ଉଦ୍ଧାର ପାଇବା ଦିନକୁ ଦିନ କଠିନ ହୋଇ ପଡ଼ୁଛି । ଧର୍ମ ମୋର ପ୍ରିୟବସ୍ତୁ, ସେଥିପାଇଁ ମୋର ପ୍ରଥମ ଅଭିଯୋଗ ହେଉଛି ଯେ ଭାରତବର୍ଷ ଧର୍ମଭ୍ରଷ୍ଟ ହେବାରେ ଲାଗିଛି । ଧର୍ମ ଶବ୍ଦଟା ମୁଁ ହିନ୍ଦୁ, ମୁସଲମାନ ବା ପାର୍ଶୀ ଧର୍ମ ଅର୍ଥରେ କହୁନାହିଁ । ଏ ଧର୍ମଗୁଡ଼ିକର ମୂଳରେ ଯେଉଁ ଧର୍ମ ରହିଚି, ମୁଁ ସେହି ଧର୍ମର କଥା କହୁଛି । ଆମେ ଈଶ୍ୱରବିମୁଖ ହୋଇ ପଡ଼ୁଛୁଁ ।

ପାଠକ—କପରି ?

ସମ୍ପାଦକ—ଆମ ବିରୋଧରେ ଦୋଷାରୋପ କରାଯାଇଥାଏ ଯେ ଆମେ ଅଳସୁଆ ଏବଂ ଲୋକମାନେ ପରିଶ୍ରମୀ, ଉତ୍ସାହୀ ଓ ତତ୍ପର । ଆମେ ସେ ଅଭିଯୋଗକୁ ମାନି ଯାଉଛୁ ଓ ସେଥିପାଇଁ ଆମ ଅବସ୍ଥା ବଦଳାଇବାକୁ ଇଚ୍ଛା କରୁଛୁ । ହିନ୍ଦୁ, ଇସ୍‌ଲାମ୍, ପାର୍ଶୀ ଖ୍ରୀଷ୍ଟ, ଆଦି ସବୁ ଧର୍ମ ଆମକୁ ଏହାହିଁ ଶିକ୍ଷା ଦେଉଛି ଯେ ସାଂସାରିକ ସମ୍ପଦ ସମ୍ପର୍କରେ ମାନ୍ଦା ଓ ଆଧ୍ୟାତ୍ମିକ କାର୍ଯ୍ୟରେ ତତ୍ପର ବା ଉତ୍ସାହୀ ହେବା ଆମର ଉଚିତ । ଆମର ପାର୍ଥିବ ବାସନାକୁ ସୀମାବଦ୍ଧ କରିବା ଓ ଆଧ୍ୟାତ୍ମିକ ଲୋଭ ବଢ଼ାଇବା ଉଚିତ ।

ପାଠକ ଆପଣଙ୍କ କଥାରୁ ଜଣା ଯାଉଛି ଯେ ଆପଣ ଧର୍ମ ସମ୍ବନ୍ଧରେ ପାଖଣ୍ଡୀ ହେବା ପାଇଁ ଉତ୍ସାହିତ କରୁଛନ୍ତି । ଅନେକ ଠକ ଏହିପରି କଥା କହି ଲୋକଙ୍କୁ ଠକୁଛନ୍ତି ଓ ବିପଥଗାମୀ କରିଛନ୍ତି ।

ସମ୍ପାଦକ—ଆପଣ ଧର୍ମ ବିରୋଧରେ ଗୋଟିଏ ଅନ୍ୟାୟ ଦୋଷାରୋପ କରୁଛନ୍ତି । ସବୁ ଧର୍ମରେ ଭଣ୍ଡ ପ୍ରଚାରକ ଥାଆନ୍ତି । ଯେଉଁଠି ଆଲୁଅ ଥାଏ, ସେଠି ଅନ୍ଧାର ମଧ୍ୟ ରହିଥାଏ । ପ୍ରତ୍ୟେକ ଜିନଷର ଖୁଇ ପଡ଼େ । ସାଂସାରିକ ବ୍ୟାପାରରେ ଯେଉଁମାନେ ଠକ, ସେମାନେ ଧର୍ମ ବ୍ୟାପାରରେ ଠକମାନଙ୍କ ଅପେକ୍ଷା ଅଧିକ ଅନିଷ୍ଟକାରୀ, ଏ କଥା ମୁଁ ସ୍ୱୀକାର କରିବାକୁ ପ୍ରସ୍ତୁତ । ଆଧୁନିକ ସଭ୍ୟତାରେ ଯେଉଁ ଭଣ୍ଡାମୀ ହେଉଛି, ତାହା ଆପଣଙ୍କୁ ଦର୍ଶାଇଛି । ସେପରି ଭଣ୍ଡାମୀ ମୁଁ ଧର୍ମରେ କେବେହେଁ ଦେଖି ନାହିଁ ।

ପାଠକ—ଆପଣ ସେ କଥା କେମିତି କହୁଛନ୍ତି ? ଧର୍ମ ନାଆଁରେ ହିନ୍ଦୁ ଓ ମୁସଲମାନମାନେ ଲଢ଼େଇ କଲେ । ଧର୍ମ ନାଆଁରେ ଖ୍ରୀଷ୍ଟାନ୍‌ମାନେ ପରସ୍ପର ମଧ୍ୟରେ ବଡ଼ ବଡ଼ ଯୁଦ୍ଧ କଲେ । ଧର୍ମ ନାଆଁରେ ହଜାର ହଜାର ନିରପରାଧ ଲୋକଙ୍କୁ ହତ୍ୟା

କରାଯାଇଛି, ସେମାନଙ୍କୁ ପୋଡ଼ିକରି ମାରିଦିଆଯାଇଛି ଏବଂ ବହୁ ଲୋକେ ନିର୍ଯ୍ୟାତିତ ହୋଇଛନ୍ତି । ଏଗୁଡ଼ାକ ତ ସଭ୍ୟତାଠାରୁ ଢେର ଖରାପ ।

ସମ୍ପାଦକ—ମୋର ଯୁକ୍ତି ଯେ, ପୂର୍ବୋକ୍ତ ଦୁଃଖକଷ୍ଟ ସଭ୍ୟତାର କଷଣ ଅପେକ୍ଷା ଅଧିକ ସହନୀୟ ଅଟେ । ପ୍ରତ୍ୟେକ ବୁଝନ୍ତି ଯେ ଆପଣ ଯେଉଁ ନୃଶଂସତାର କଥା କହିଲେ, ସେଗୁଡ଼ାକ ଧର୍ମ ନାମରେ କରାଯାଇଥିଲେ ହେଁ, ତାହା ଧର୍ମର ଅଂଗ ନୁହେଁ । ସେଥିପାଇଁ ଏହି ନୃଶଂସ କାଣ୍ଡର ପରିଣାମରେ ଆଜି ବିଶେଷ କିଛି ଘଟେ ନାହିଁ । କୌଣସିଠାରେ ବା କୌଣସି ସମାଜରେ ଅଜ୍ଞ ବା ସରଳ-ବିଶ୍ୱାସୀ ଲୋକ ରହିଥିବା ଯାଏ ଏ ସବୁ ଘଟୁଥିବ । କିନ୍ତୁ ଏ ସଭ୍ୟତାର ନିଆଁରେ କେତେ ଯେ ପୋଡ଼ି ମରିଛନ୍ତି, ତାହାର ଅନ୍ତ ନାହିଁ । ଏହାର ଭୟଙ୍କର ପରିଣତି ହେଉଛି ଯେ ଲୋକେ ଏହାକୁ ଭଲ ମଣି ଏଥିରେ ଝାସ ଦେଉଛନ୍ତି । ଫଳରେ ସେମାନେ ଧର୍ମପଥ ତ ହୁଡ଼ୁଛନ୍ତି, ଏବଂ ପ୍ରକୃତ ସାଂସାରିକ ସୁଖ ମଧ୍ୟ ଭୋଗ କରିପାରୁ ନାହାନ୍ତି । ଏ ସଭ୍ୟତା ଆମକୁ ସୁହାଉଥିଲେ ହେଁ, ମୂଷା ପରି ଲୁକ୍କାୟିତ ଭାବରେ ଆମର ଅନିଷ୍ଟ କରୁଅଛି । ଏ ସଭ୍ୟତାର ପୂର୍ଣ୍ଣ ପରିଣାମ ଯେତେବେଳେ ଆମେ ଉପଲବ୍ଧି କରିବୁ, ସେତେବେଳେ ଯାଇ ବୁଝିବୁ ଯେ ଧର୍ମସମ୍ବନ୍ଧୀୟ ଅନ୍ଧ କୁସଂସ୍କାରଗୁଡ଼ିକ ଏ ସଭ୍ୟତା ତୁଳନାରେ ଅଳ୍ପ କ୍ଷତିକାରକ । ଏହା ବୋଲି ମୁଁ ଯୁକ୍ତି କରୁନାହିଁ ଯେ ଏହି ପୁରୁଣା କୁସଂସ୍କାରଗୁଡ଼ିକ ରହିବା ଦରକାର । ସେଗୁଡ଼ିକ ବିରୋଧରେ ଆମେ ନିଶ୍ଚୟ ଲଢ଼ିବୁ; କିନ୍ତୁ ଧର୍ମ ପ୍ରତି ଅନାସ୍ଥା ଦେଖାଇ ଆମେ ସେହି ଲଢ଼େଇ କରି ପାରିବୁ ନାହିଁ । ମାତ୍ର ଧର୍ମର ମହତ୍ତ୍ୱକୁ ବୁଝି ଏବଂ ତାକୁ ସଂରକ୍ଷଣ କରି ଧର୍ମ ସମ୍ବନ୍ଧୀୟ କୁସଂସ୍କାରକୁ ଦୂର କରିପାରିବୁ ।



ପାଠକ—ତାହାହେଲେ ଆପଣ କହିବାକୁ ଚାହାନ୍ତି ଯେ ଇଂରେଜମାନେ ଭାରତକୁ ଯେଉଁ ଶାନ୍ତିର ସୁଖ ଦେଇଛନ୍ତି, ତାହାର ମୂଲ୍ୟ ନାହିଁ । (ହ୍ୱିଢୀ ବଜୁଛି) ବ୍ରିଟିଶ ଲୋକେ ଭାରତ ଉପରେ ଏକ ଅନାବଶ୍ୟକ ବୋଝ, ଆପଣ ଏହା କହୁଛନ୍ତି କି ? (ଇଂରାଜୀ ବହିରୁ)

ସମ୍ପାଦକ—ଆପଣ ଶାନ୍ତି ଦେଖିଲେ ଅବା ଦେଖୁଥିବେ, ମାତ୍ର ମୁଁ ତାହା ଦେଖୁ ନାହିଁ ।

ପାଠକ—ତାହାହେଲେ ଠଗ, ପିଣ୍ଡାରୀ, ଭିଲ ଯେଉଁ ଆତଙ୍କ ସୃଷ୍ଟି କରିଥିଲେ, ଆପଣ ତାକୁ ସାମାନ୍ୟ ମଣୁଛନ୍ତି ?

ସମ୍ପାଦକ ଆପଣ ଏ ବିଷୟରେ ଟିକିଏ ଚିନ୍ତା କଲେ ଜାଣି ପାରିବେ ଯେ ସେହି ଆତଙ୍କ ସେତେ ଭୟାବହ ନ ଥିଲା । ପ୍ରକୃତରେ ଯଦି ସେମାନେ ସେପରି ଆତଙ୍କ ସୃଷ୍ଟି କରିଥାନ୍ତେ, ତେବେ ତ ଇଂରେଜ ଆସିଲା ବେଳକୁ ଏ ଦେଶର ଅନ୍ୟ ଲୋକେ ଆଉ ବଞ୍ଚି ରହି ନ ଥାନ୍ତେ । ପୁଣି ଆଜିର ଶାନ୍ତି କେବଳ ନାମକୁ ମାତ୍ର ଶାନ୍ତି । କାରଣ, ଏ ଶାନ୍ତି ଫଳରେ ଆମେ ନପୁଂସକ ଓ ଭୀରୁ ହୋଇ ଯାଇଛୁଁ । ଇଂରେଜ ଭିଲ୍ ଓ ପିଣ୍ଡାରୀମାନଙ୍କ ସ୍ୱଭାବଚରିତ୍ର ବଦଳାଇ ଦେଇଛନ୍ତି ବୋଲି ଆମେ ଭାବିବା ଠିକ୍ ନୁହେଁ । ସେଥିପାଇଁ ଭିଲ୍ ଓ ପିଣ୍ଡାରୀଙ୍କ ଅତ୍ୟାଚାରର ସହିବା ବରଂ ଭଲ । ଅନ୍ୟ କେହି ଆସି ଆମକୁ ଅତ୍ୟାଚାରରୁ ରକ୍ଷା କରିବାଟା ଆମର କାପୁରୁଷତାର ପରିଚାୟକ । ଦୁର୍ବଳ ଓ ଡରୁଆ ହୋଇ ଅନ୍ୟର ଆଶ୍ରୟରେ ରହିବା ଅପେକ୍ଷା ଭିଲ୍‌ର ଶରାଘାତରେ ମରିବାକୁ ମୁଁ ଅଧିକ ପସନ୍ଦ କରେଁ । ସେ ଯୁଗର ଅରକ୍ଷିତ ଭାରତବର୍ଷ ପ୍ରକୃତରେ ଶୌର୍ଯ୍ୟଶାଳିନୀ ଥିଲା । ମ୍ୟାକ’ଲେ ଭାରତୀୟମାନଙ୍କୁ କାପୁରୁଷ କହିବା ତାଙ୍କର ଅଜ୍ଞତାର ପରିଚୟ

ଦେଇଛି । ଭାରତବାସୀଗଣ କେବେହେଁ ଏହି ଅଭିଯୋଗ ବା ଅପଖ୍ୟାତି ପାଇ ନ ପାରନ୍ତି । ଯେଉଁ ଦେଶରେ ଲୋକେ ବାଘ, ଭାଲୁ ରହୁଥିବା ପାହାଡ଼ ଉପରେ ରହନ୍ତି, ସେ ଲୋକେ ଯଦି କାପୁରୁଷ ବା ଭୀରୁ ହୋଇଥାନ୍ତେ ତେବେ ସେମାନେ ବହୁ ଦିନରୁ ଲୋପ ପାଇଯାଇଥାନ୍ତେ । ଆପଣ କେବେହେଲେ ଆମ ଋଷଜମିକୁ ଯାଇଛନ୍ତି କି ? ମୁଁ ଆପଣଙ୍କୁ ନିର୍ଭର ଜବାବ ରୂପେ କହିପାରେ ଯେ ଆଜଯାଏ ଆମ ଦେଶର ଋଷୀମାନେ ବିଲରେ ଯେପରି ନିର୍ଭୟରେ ଶୁଅନ୍ତି, ସେପରି ଶୋଇବାକୁ ଆପଣ, ମୁଁ ଓ ଇଂରେଜମାନେ ସୁଦ୍ଧା ଇତସ୍ତତଃ ହେବେ । ନିର୍ଭୟତାରେ ହିଁ ପ୍ରକୃତ ବଳ ନିହିତ । ଦେହରେ କେବଳ ଗୁଡ଼ାଏ ମାଂସପେଶୀ ଥିଲେ ମନୁଷ୍ୟ ନିର୍ଭୟ ହୋଇଯାଏ ନାହିଁ । ପୁଣି ଆପଣ ହୋମରୁଲ ବା ସ୍ୱରାଜ୍ୟ ଋହୁଁ-ଥିବାରୁ ମୁଁ ଆପଣଙ୍କୁ ସାବଧାନ ଓ ସ୍ମରଣ କରାଇ ଦେବାକୁ ଋହେଁ ଯେ ଏ ଭୀଲ୍, ପିଣ୍ଡାରୀ ଓ ଠଗ ମଧ୍ୟ ଆମରି ଦେଶ-ଭାଇ । ସେମାନଙ୍କୁ ଜିଣିବା ଆମରି କାମ । ଯେ ପର୍ଯ୍ୟନ୍ତ ନିଜ ଦେଶଭାଇଙ୍କୁ ଆପଣ ଡରୁଥିବେ, ସେ ପର୍ଯ୍ୟନ୍ତ ନିଜର ଲକ୍ଷ୍ୟ ସ୍ଥଳରେ ପହଞ୍ଚି ପାରିବେ ନାହିଁ ।

## ଭାରତର ଅବସ୍ଥା-୨

### ରେଳଗାଡ଼ି

ପାଠକ—ଇଂରେଜ ରାଜତ୍ୱ ଦ୍ୱାରା ଭାରତବର୍ଷରେ ଶାନ୍ତି ରହିଛି ବୋଲି ମୋର ଯେଉଁ ସୁଖ ବା ଆଶ୍ୱାସନା ଥିଲା, ଆପଣ ତାକୁ ଦୂର କରିଦେଲେ ।

ସଂପାଦକ—କେବଳ ଧର୍ମ ସମ୍ବନ୍ଧରେ ମୋର ମତ ମୁଁ ଆପଣଙ୍କୁ କହୁଛି । ଭାରତ କାହିଁକି କାଙ୍ଗାଳ ହୋଇଛି, ସେ ବିଷୟରେ ମୋର ମତ ଯେତେବେଳେ ବ୍ୟକ୍ତ କରିବି, ସେତେ-ବେଳେ ଆପଣ ମୋତେ ସମ୍ଭବତଃ ଅସୁଖ ପାଇବେ । କାରଣ, ଯେଉଁ କଥାଗୁଡ଼ାକୁ ଆମେମାନେ ଏ ପର୍ଯ୍ୟନ୍ତ ଭାରତ ପାଇଁ ଲାଭଦାୟକ ବା ହିତକାରୀ ମଣିଛୁ, ମୋତେ ସେଗୁଡ଼ାକ କ୍ଷତି-କାରକ ଜଣା ପଡ଼ୁଛି ।

ପାଠକ—ସେ ଗୁଡ଼ାକ କଅଣ ?

ସଂପାଦକ—ଭାରତବର୍ଷକୁ ଏ ରେଳଗାଡ଼ି, ଡାକ୍ତର ଓ ଓକିଲମାନେ ଏପରି କାଙ୍ଗାଳ କରି ଦେଇଛନ୍ତି ଯେ ଆମେ ଯଦି ବେଳହୁଁ ନ ଚେତିବୁଁ ତେବେ ଆମର ସର୍ବନାଶ ହୋଇଯିବ ।

ପାଠକ—ବାସ୍ତବରେ ଆପଣ ଓ ମୁଁ ଆଦୌ ଏକମତ ହୋଇପାରିବୁଁ କି ନାହିଁ, ଏ ବିଷୟରେ ମୋର ଆଶଙ୍କା ଉପୁଜିଲାଣି । ଯେଉଁ ଅନୁଷ୍ଠାନ ବା ବ୍ୟବସ୍ଥାଗୁଡ଼ାକୁ ଆମେ ଭଲ ବୋଲୁଛୁଁ,

ଆପଣ ତ ସେହିଗୁଡ଼ିକ ଉପରେ ଆକ୍ରମଣ ଚଳାଇଲେଣି । ଆଉ ବାକି ରହିଲା କଣ ?

ସମ୍ପାଦକ—ଆପଣଙ୍କୁ ଧୈର୍ଯ୍ୟ ଧରିବାକୁ ହେବ । ଏହି ସଭ୍ୟତା-ଜନିତ ଅନିଷ୍ଟ ଗୁଡ଼ିକର ପ୍ରକୃତ ଭିତର ସ୍ୱରୂପ ବୁଝିବା ସହଜ ନୁହେଁ । ଡାକ୍ତରମାନେ ଆମକୁ କହନ୍ତି ଯେ କ୍ଷୟ-ରୋଗୀ ତାହାର ଶେଷ ନିଶ୍ୱାସ ପର୍ଯ୍ୟନ୍ତ ବଞ୍ଚିରହିବାର ଆଶା ରଖିଥାଏ । କ୍ଷୟରୋଗ ହେଲେ ବାହାରକୁ ତାହାର କୌଣସି ଲକ୍ଷଣ ପ୍ରକାଶ ପାଏ ନାହିଁ ବରଂ ଓଲଟା ଏ ରୋଗ ରୋଗୀର ମୁହଁରେ (ସୁସ୍ଥ ଥିବାର) ଗୋଟିଏ ଭ୍ରାନ୍ତ ଆଭା ଆଣିଦିଏ । ଫଳରେ ରୋଗୀ ଭଲ ଅଛି ବୋଲି ବିଶ୍ୱାସ ହୁଏ । ଏ ସଭ୍ୟତା ସେହି କ୍ଷୟରୋଗ ପରି ଗୋଟାଏ ଛଳନା ବା ଅଦୃଶ୍ୟ ରୋଗ । ଏଥିପାଇଁ ବିଶେଷ ସାବଧାନ ରହିବା ଆମର ଉଚିତ ।

ପାଠକ - ଭଲକଥା, ତାହାହେଲେ ଆପଣ ବର୍ତ୍ତମାନ ମୋତେ ରେଲଗାଡ଼ିର ବୃତ୍ତାନ୍ତ ଶୁଣାନ୍ତୁ ।

ସଂପାଦକ - ବ୍ରିଟିଶ ସରକାର ଭାରତବର୍ଷକୁ ଯେପରି ହାତ ମୁଠାରେ ରଖିଛନ୍ତି, ଏହି ରେଳଗାଡ଼ି ନ ଥିଲେ ସେମାନେ ଯେ ସେପରି ରଖିପାରି ନ ଥାନ୍ତେ, ଏ କଥାଟା ଆପଣଙ୍କର ହୃଦ୍‌ବୋଧ ହୋଇଯିବ । ଏହି ରେଲଗାଡ଼ି ଯୋଗୁଁ ପ୍ଲେଗ, ମହାମାରୀ ବ୍ୟାପି ଯାଇଥିଲା । ଏହି ରେଲଗାଡ଼ି ନ ଥିଲେ ଏତେ ଲୋକ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଯାଇପାରି ନ ଥାନ୍ତେ । ସେହିମାନେ ହିଁ ସଂକ୍ରାମକ ରୋଗର ବୀଜାଣୁ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ବହନ କରି ନିଅନ୍ତି । ଫଳରେ ସଂକ୍ରାମକ ରୋଗ ଏତେଦୂର ବ୍ୟାପନ୍ତା ନାହିଁ । ପୂର୍ବେ ପ୍ରକୃତ ଆମ୍ଭମାନଙ୍କୁ ସଂକ୍ରାମକ

ଗେଗୀଠାରୁ ଅଲଗା କରି ରଖିଥିଲ । ଏହି ରେଲଗାଡ଼ି ଯୋଗୁଁ ବାରମ୍ବାର ଦୁର୍ଭିକ୍ଷ ପଡ଼ୁଛି । କାରଣ, ରେଲଗାଡ଼ିର ସୁବିଧା ଯୋଗୁଁ ଲୋକେ ଖାଦ୍ୟ ଶସ୍ୟ ବିକ୍ରୀ କରି ଦେଉଛନ୍ତି । ଯେଉଁଠି ଦର ଚଡ଼ା ହୋଇଯାଉଛି, ଖାଦ୍ୟଶସ୍ୟ ସେହି ସ୍ଥାନକୁ ଚାଲି-ଯାଉଛି । ଲୋକେ ବେପରବାଏ ହୋଇ ଯାଉଛନ୍ତି । ଫଳରେ ଦୁର୍ଭିକ୍ଷର ଦାଉ ସହିବାକୁ ପଡ଼ୁଛି । ଏ ରେଲଗାଡ଼ି ଯୋଗୁଁ ମଣିଷର କୁପ୍ରବୃତ୍ତି ମଧ୍ୟ ବଢ଼ିଛି । ମନ୍ଦ ଲୋକେ ସେମାନଙ୍କର ଦୁଷ୍କାର୍ଯ୍ୟ ଦ୍ରୁତଗତିରେ କରି ପାରୁଛନ୍ତି । ଭାରତବର୍ଷର ତୀର୍ଥସ୍ଥାନ-ଗୁଡ଼ିକ ଏବେ ଅପବିତ୍ର ହୋଇଗଲଣି । ପୂର୍ବେ ଲୋକେ ବହୁତ ଦୁଃଖକଷ୍ଟ ନ ସହି ତୀର୍ଥ-ସ୍ଥାନକୁ ଯାଇପାରୁ ନଥିଲେ । ସେହି ହେତୁ ପ୍ରକୃତରେ ଭକ୍ତମାନ ଲୋକେ ହିଁ ତୀର୍ଥକୁ ଯାଉଥିଲେ । ଆଜିକାଲି ତ ବଦମାସ ଲୋକେ ସେମାନଙ୍କର କୁକର୍ମ ସାଧନ ଉଦ୍ଦେଶ୍ୟରେ ତୀର୍ଥକୁ ଯାଉଛନ୍ତି ।

ପାଠକ ଏଗୁଡ଼ାକ ତ ଆପଣ ଏକତରଫା କଥା କହି-ଗଲେ । ମନ୍ଦଲୋକେ ଯେମିତି ସୁବିଧାରେ ତୀର୍ଥକୁ ଯାଇପାରନ୍ତି, ଭଲ ଲୋକେ ମଧ୍ୟ ସେହିପରି ଯାଇପାରନ୍ତି । ତେଣୁ ରେଲଗାଡ଼ିର ସଦ୍‌ବ୍ୟବହାର ଭଲ ଲୋକେ କରୁ ନାହାନ୍ତି ?

ସମ୍ପାଦକ—ଭଲ କଥା ବା ବିଷୟ କଚ୍ଛପଗତିରେ ଗେଣ୍ଡା-ପରି ଧୀରେ ଧୀରେ ଆଗେଇ ଚାଲେ । ତେଣୁ ରେଲଗାଡ଼ି ଦ୍ୱାରା ତାହାର କାମ ଘଟିବ ନାହିଁ । ଯେଉଁମାନେ କିଛି ଭଲକାମ କରିବାକୁ ଚାହାନ୍ତି ସେମାନେ ସ୍ୱାର୍ଥପର ହୁଅନ୍ତି ନାହିଁ ଏବଂ ସେଥିପାଇଁ ସେମାନେ ତରବର ହୁଅନ୍ତି ନାହିଁ । ସେମାନେ ଜାଣନ୍ତି ଯେ ମନୁଷ୍ୟର ମନରେ କୌଣସି ଭଲ ଭାବନା ପୂରାଇବାକୁ ବହୁତ ସମୟ ଲାଗେ । ମାତ୍ର ମନ୍ଦ କଥାର ଚେର ଲାଗିଯାଏ, ସେଥିପାଇଁ

ତାହା ଦ୍ରୁତଗତିରେ ବ୍ୟାପିଯାଏ । ଘର ତିଆରି କରିବାକୁ ସମୟ ଲାଗେ, ମାତ୍ର ଅଳ୍ପ ସମୟରେ ତାକୁ ଭାଙ୍ଗି ଦିଆଯାଇ ପାରେ । ସେଥିପାଇଁ ରେଳଗାଡ଼ି କେବଳ ମନ୍ଦ ଜିନିଷଗୁଡ଼ିକର ପ୍ରସାର କରିବାରେ ବାହକ । ରେଳଗାଡ଼ି ଦ୍ଵାରା ଦୁର୍ଭିକ୍ଷ ପ୍ରସାର ଲାଭ କରେ କି ନାହିଁ, ସେ ବିଷୟରେ ଯୁକ୍ତିତର୍କ ଉଠିପାରେ, ମାତ୍ର ରେଳଗାଡ଼ି ଦ୍ଵାରା ଯେ ମନ୍ଦ କଥାଗୁଡ଼ାକ ପ୍ରସାର ଲାଭ କରୁଛି, ସେ ବିଷୟରେ ମୋର ତିଳେ ହେଲେ ସନ୍ଦେହ ନାହିଁ ।

ପାଠକ—ସେ ଯାହାହେଉ, ମାତ୍ର ରେଲଓ୍ଵେ-ବ୍ୟବସ୍ଥା ଫଳରେ ଭାରତରେ ସ୍ୱଦେଶପ୍ରେମ ବା ରାଷ୍ଟ୍ରୀୟ ଭାବନାର ନୂତନ ସ୍ପନ୍ଦନ ଯେ ଆମେ ଦେଖୁଛୁ—ତାହା ତାହାର ଆଉ ସବୁ କ୍ଷତି ବା ଅସୁବିଧାକୁ ଗୌଣ କରି ଦେଉଛି ।

ସଂପାଦକ—ଆପଣଙ୍କର ଏ ଉକ୍ତିକୁ ମୁଁ ଭୁଲ କହିବି । ଆମ୍ଭମାନଙ୍କୁ ଇଂରେଜମାନେ ଶିଖେଇଛନ୍ତି ଯେ ଆଗରୁ ଆମ୍ଭେ-ମାନେ ଗୋଟିଏ ରାଷ୍ଟ୍ର ନ ଥିଲୁଁ । ଏବଂ ଗୋଟିଏ ରାଷ୍ଟ୍ର ହେବାକୁ ବା ଆମର ରାଷ୍ଟ୍ରୀୟ ଏକତା ଆସିବା ପାଇଁ ଆମକୁ ଶହ ଶହ ବର୍ଷ ଲାଗିଯିବ । ଏ କଥାଟା ସଂପୂର୍ଣ୍ଣ ଭିତ୍ତିହୀନ । ଇଂରେଜମାନେ ଭାରତବର୍ଷକୁ ଆସିବା ପୂର୍ବରୁ ଭାରତ ଗୋଟିଏ ରାଷ୍ଟ୍ରଥିଲା । ଗୋଟିଏ ବିଚାର ଆମକୁ ଉଦ୍‌ବୁଦ୍ଧ କରୁଥିଲା, ଆମର ଜୀବନଯାପନ ଏକ ଥିଲା । ଆମେ ଏକ ରାଷ୍ଟ୍ର ଥିଲୁଁ ବୋଲି ସିନା ଇଂରେଜମାନେ ଗୋଟିଏ ରାଜ୍ୟ ପ୍ରତିଷ୍ଠା କରିପାରିଲେ । ତାହାପରେ ସେହିମାନେ ଆମମାନଙ୍କ ମଧ୍ୟରେ ନାନା ଭେଦଭାବ ସୃଷ୍ଟି କଲେ ।

ପାଠକ—କଥାଟା ଆହୁରି ବୁଝାଇ କୁହନ୍ତୁ ।

ସଂପାଦକ—ମୁଁ ନ ଭାବି ନ ଚିନ୍ତି ଏ କଥା କହୁନାହିଁ । ଆମେ ଗୋଟିଏ ରାଷ୍ଟ୍ର ଥିଲୁଁ ଏହାର ଅର୍ଥ ଏହା ନୁହେଁ ଯେ ଆମ

ଭିତରେ କୌଣସି ମତଭେଦ ନ ଥିଲା । ଆମ ଦେଶର ନେତା-
ମାନେ ପାଦରେ କିମ୍ବା ବଳଦ-ଗାଡ଼ିରେ ସମୁଦାୟ ଭାରତବର୍ଷ
ପ୍ରଦକ୍ଷିଣ କରୁଥିଲେ, ଏ କଥା ଆପଣ ଭାବନ୍ତୁ । ସେମାନେ
ପରସ୍ପରର ଭାଷା ଶିଖୁଥିଲେ ଓ ସେମାନଙ୍କ ପରସ୍ପର ମଧ୍ୟରେ
ସଂପର୍କ-ଶୂନ୍ୟତା ନ ଥିଲା । ଆମର ଯେଉଁ ଦୂରଦର୍ଶୀ ପୂର୍ବ
ପୁରୁଷମାନେ ଦକ୍ଷିଣରେ ସେତୁବନ୍ଧ ରାମେଶ୍ୱର, ପୂର୍ବ ଦିଗରେ
ଜଗନ୍ନାଥ-ପୁରୀ ଓ ଉତ୍ତରରେ ହରଦ୍ୱାର ସ୍ଥାପନ କରିଥିଲେ,
ଆପଣଙ୍କ ବିଚାରରେ ସେମାନେ କେଉଁ ଅଭିପ୍ରାୟ ମନରେ ରଖି
ଏହା କରିଥିଲେ ? ସେମାନେ ଯେ ମୂର୍ଖ ନ ଥିଲେ, ଏହା ଆପଣ
ସ୍ୱୀକାର କରିବେ । ଘରେ ବସିକରି ଯେ ଭଗବତ୍-ଆରାଧନା
ହୋଇପାରେ, ତାହା ସେମାନଙ୍କୁ ଜଣାଥିଲା । "ମନ ଶୁଦ୍ଧ ଥିଲେ
ଗାଡ଼ୁଆ ଗଙ୍ଗା" କଥାଟି ସେମାନେ ଆମକୁ ଶିଖାଇଥିଲେ ମାତ୍ର
ଯେମାନେ ଭାବିଲେ ଯେ ପ୍ରକୃତି ଭାରତବର୍ଷକୁ ଗୋଟିଏ ଦେଶ
କରି ଗଢ଼ିଛି । ତେଣୁ ଭାରତର ବିଭିନ୍ନ ଅଂଚଳରେ ସେମାନେ
ତୀର୍ଥସ୍ଥାନ ପ୍ରତିଷ୍ଠା କରିଥିଲେ । ଭାରତବାସୀଙ୍କ ମନରେ ରାଷ୍ଟ୍ରୀୟ-
ତାର ବହ୍ନି ପ୍ରଜ୍ୱଳିତ କରିଥିଲେ । ପୃଥିବୀର ଅନ୍ୟ କୌଣସି
ଦେଶରେ ସେପରି ଏକତା ବା ରାଷ୍ଟ୍ରୀୟ ଭାବନା ନ ଥିଲା ।
ଇଂରେଜମାନଙ୍କ ମଧ୍ୟରେ ଯେଉଁ ଏକତା ନାହିଁ, ଆମ ଭାରତୀୟଙ୍କ
ମଧ୍ୟରେ ସେ ଏକତା ଥିଲା ଓ ଅଛି । କେବଳ ଆପଣ ଓ ମୁଁ
ଯେଉଁମାନେ ନିଜକୁ ସଭ୍ୟ ଓ ଶ୍ରେଷ୍ଠ ମଣୁଛୁଁ, ଆମରି ମନରେ
ଗୋଟିଏ ଭ୍ରାନ୍ତ ଧାରଣା ଅଛି ଯେ ଭାରତବର୍ଷ ଗୋଟିଏ ରାଷ୍ଟ୍ର
ନୁହେଁ, ଆମେ ସବୁ ଅଲଗା ଅଲଗା । ଏହି ରେଲୱେ ସ୍ଥାପିତ
ହେବା ପରେ ହିଁ ଏ ଭେଦ-ଭାବ ଆମ ମନକୁ ଆସିଛି ଏବଂ ଆପଣ
ଅକୁଣ୍ଠିତ ଭାବରେ କହୁଛନ୍ତି ଯେ ରେଳପଥ ଦ୍ୱାରା ହିଁ ଏହି

ଭେଦଭାବ ଦୂର ହୋଇଛି । ଜଣେ ଅଫିମଖୋର ଯୁକ୍ତି ବାଢିପାରେ ଯେ ଅଫିମଦ୍ୱାରା କି କ୍ଷତି ହୁଏ, ତାହା ସେ ଅଫିମ ଖାଇଲାରୁ ଜାଣିଲା । ତେଣୁ ଅଫିମ ଭଲ ଜିନିଷ । ବେଦପାଠ ସମ୍ବନ୍ଧରେ ମୁଁ ଯାହା କହିଲି ଆପଣ ସେ ବିଷୟ ଭଲ ଭାବରେ ଚିନ୍ତା କରନ୍ତୁ । ଆପଣଙ୍କ ମନରେ ଆହୁରି ଅନେକ ସନ୍ଦେହ ଦେଖା ଦେବ । ମାତ୍ର ଆପଣ ନିଜେ ସେ ସବୁର ସମାଧାନ କରି ପାରିବେ ।

ପାଠକ :–ଆପଣ ଯାହା କହିଲେ, ସେ ବିଷୟରେ ମୁଁ ଚିନ୍ତା କରିବି । କିନ୍ତୁ ବର୍ତ୍ତମାନ ମୋ ମନରେ ଗୋଟିଏ ପ୍ରଶ୍ନ ଉଠୁଛି । ମୁସଲମାନମାନେ ଭାରତବର୍ଷକୁ ଆସିବା ପୂର୍ବର ଭାରତ-ବର୍ଷ କଥା ଆପଣ କହିଲେ । ବର୍ତ୍ତମାନ ତ ଭାରତରେ ମୁସଲମାନ, ଖ୍ରୀଷ୍ଟାନ ଓ ପାର୍ଶିମାନେ ବହୁ ସଂଖ୍ୟାରେ ରହିଛନ୍ତି । ଏ ସମସ୍ତ ଗୋଟିଏ ଜାତି ବା ଗୋଷ୍ଠୀ କିପରି ହୋଇ ରହିବେ ? ହିନ୍ଦୁ-ମୁସଲମାନଙ୍କ ମଧ୍ୟରେ ତ ବହୁତ ପୁରୁଣା ଶତ୍ରୁତା ରହିଛି । ଆଉରି ଗୋଟିଏ କଥା ଅଛି ଯେ ବ୍ରାହ୍ମଣ ପଠାଣ ଏକ-ମୁହାଁ ହୁଅନ୍ତି ନାହିଁ । ହିନ୍ଦୁ ପୂର୍ବକୁ ମୁହଁ କରି ପ୍ରାର୍ଥନା କରେ ମୁସଲମାନ ପଶ୍ଚିମକୁ ମୁହଁ କରି ନମାଜ ପଢ଼େ । ମୁସଲମାନ ହିନ୍ଦୁକୁ ମୂର୍ତ୍ତି ପୂଜକ ବୋଲି ଘୃଣା କରେ । ହିନ୍ଦୁ ମୂର୍ତ୍ତି-ପୂଜକ, ମୁସଲମାନ ମୂର୍ତ୍ତି ଭଞ୍ଜକ । ହିନ୍ଦୁ ଗୋରୁକୁ ପୂଜା କରେ, ମୁସଲମାନ ଗୋହତ୍ୟା କରେ । ହିନ୍ଦୁ ଅହିଂସାରେ ବିଶ୍ୱାସୀ ମାତ୍ର ମୁସଲମାନ ହିଂସକ । ପ୍ରତି ପଦେପଦେ ଏ ଯେଉଁ ବିରୋଧ ରହିଛି, ଏହା କିପରି ଦୂର ହେବ ? ଭାରତରେ ଏକତା ଆସିବ ବା କିପରି ?

# ଭାରତର ଅବସ୍ଥା-୩

## ହିନ୍ଦୁ-ମୁସଲମାନ

ସଂପାଦକ—ଆପଣଙ୍କର ଶେଷ ପ୍ରଶ୍ନଟି ବଡ଼ ଗୁରୁତ୍ୱପୂର୍ଣ୍ଣ ମାତ୍ର ଟିକଏ ଚିନ୍ତାକଲେ ତାହାର ସମାଧାନ ସହଜ ଜଣା ପଡ଼ିବ । ଏ ପ୍ରଶ୍ନଟି ମଧ୍ୟ ରେଳଗାଡ଼ି, ଓକିଲ ଓ ଡାକ୍ତରଙ୍କ ହେତୁରୁ ଉପୁଜିଛି । ଓକିଲ ଓ ଡାକ୍ତରଙ୍କ କଥା ମଧ୍ୟ ବର୍ତ୍ତମାନ ଆଲୋଚନା କରିବା, ରେଲୱେ ବିଷୟରେ ଆମେ ଆଲୋଚନା କରି ସାରିଲୁଁ । ସେ ବିଷୟରେ ମୁଁ ଏତିକି କହିବାକୁ ଚାହେଁ ଯେ ମଣିଷ ଏପରି ଗଢ଼ା ଯାଇଛି ଯେ ତାହାର ହାତଗୋଡ଼ ଦ୍ୱାରା ଯେତିକି କାମ ହୋଇ ପାରିବ, ସେତିକି କାମ ତାହାର କରିବା ଉଚିତ । ଆମେ ଯଦି ରେଳଗାଡ଼ି ଓ ଆମକୁ ପାଗଳ କରୁଥିବା ଚଳନ୍ତି ଯାନ ଆଦିରେ ଧାଁ-ପଡ଼ ନ କରିବା, ତେବେ ବର୍ତ୍ତମାନ ଯେଉଁସବୁ ବିଭ୍ରାଟ ବା ଜଟିଳ ସମସ୍ୟା ଦେଖା ଦେଉଛି, ଆଦୌ ଉପୁଜିବ ନାହିଁ । ଆମେ ନିଜେ ନିଜ ଦୁଃଖକୁ ଡାକି ଆଣୁଛୁ । ଯାତାୟତ ସମ୍ବନ୍ଧରେ ଉଚ୍ଚାକାଂକ୍ଷା ବିଷୟରେ ମନୁଷ୍ୟର ସାମର୍ଥ୍ୟକୁ ଭଗବାନ୍ ତାହାର ଦେହ-ଗଠନରେ ସୀମାବଦ୍ଧ କରି ଦେଇଛନ୍ତି । କିନ୍ତୁ ମଣିଷ ସେ ସୀମା ଲଙ୍ଘନ କରିବାକୁ ନାନା ଉପାୟ ବାହାର କରିଛି । ମଣିଷ ସ୍ରଷ୍ଟା ଭଗବାନ୍‌ଙ୍କୁ ଜାଣିବ ବୋଲି ଭଗବାନ୍ ତାକୁ ବୁଦ୍ଧି ଦେଇଥିଲେ । ନିଜର ସୃଷ୍ଟିକର୍ତ୍ତାଙ୍କୁ

ଭୁଲିବାରେ ମଣିଷ ସେ ବୁଦ୍ଧିକୁ ଲଗାଇଲା । ମୁଁ ଏପରି ଗର୍ବୀ ହୋଇଛି ଯେ ମୁଁ କେବଳ ମୋର ପଡ଼ଶୀଙ୍କର ସେବା କରି-ପାରିବି । କିନ୍ତୁ ମୁଁ ଅହଙ୍କାରର ବଶବର୍ତ୍ତୀ ହୋଇ ଗୋଟିଏ ଆବିଷ୍କାରର ଛଳନା କରୁଛି ଯେ ମୋର ଏ ଦେହଦ୍ୱାରା ସମଗ୍ର ବିଶ୍ୱର ସେବା ନିଶ୍ଚୟ କରିବି । ଏହା କରିବାକୁ ଯାଇ ମଣିଷ ନାନା ପ୍ରକୃତିର ଓ ନାନା ଧର୍ମର ଲୋକଙ୍କ ସମ୍ପର୍କରେ ଆସି ଶେଷରେ ଘାବରା ହୋଇଯାଏ । ମୋର ଏହି ଯୁକ୍ତି ଦୃଷ୍ଟିରୁ ଆପଣ ବୁଝିପାରିବେ ଯେ ପ୍ରକୃତରେ ରେଲୱେ-ବ୍ୟବସ୍ଥା କେଡ଼େ ବିପଜ୍ଜନକ ବ୍ୟବସ୍ଥା । ଏହି ବ୍ୟବସ୍ଥା ହେତୁରୁ ମନୁଷ୍ୟ ତାହାର ସ୍ରଷ୍ଟାଙ୍କଠାରୁ ଦୂରେଇ ଗଲାଣି ।

ପାଠକ କିନ୍ତୁ ମୋର ପ୍ରଶ୍ନର ଉତ୍ତର ପାଇବାକୁ ମୁଁ ବର୍ତ୍ତମାନ ଅଧୀର ହେଲିଣି । ମୁସଲମାନଙ୍କ ଆଗମନ ଫଳରେ ଭାରତର ରାଷ୍ଟ୍ରୀୟତା ଲୋପ ପାଇଲା ନାହିଁ କି ?

ସଂପାଦକ—ଭାରତବର୍ଷରେ ନାନା ଧର୍ମର ଲୋକେ ରହିବା ଯୋଗୁଁ ତାହାର ରାଷ୍ଟ୍ରୀୟ ସହତି ନଷ୍ଟ ହୋଇ ନ ପାରେ । କୌଣସି ଦେଶରେ ବିଦେଶୀ ଲୋକେ ରହିଲେ, ତାହାର ରାଷ୍ଟ୍ରୀୟତା ଧ୍ୱଂସ ପାଇଯାଏ ନାହିଁ । ସେହି ବିଦେଶୀ ଲୋକେ ସେ ଦେଶରେ ମିଶିଯାନ୍ତି । ଯେଉଁଠାରେ ଏହିପରି ସମ୍ମିଶ୍ରଣ ଘଟେ, ସେ ଦେଶ ଏକ ରାଷ୍ଟ୍ର । ବିଭିନ୍ନ ( ଜାତି, ଧର୍ମ, ସଂସ୍କୃତିର ) ଲୋକମାନଙ୍କୁ ନିଜ ସମାଜ, ସଂସ୍କୃତିରେ ମିଳାଇ ନେବାର ଶକ୍ତି ସେ ଦେଶର ଥିବା ଆବଶ୍ୟକ । ଭାରତ ଚିରକାଳ ଏହିପରି ରାଷ୍ଟ୍ର ହୋଇ ରହିଛି । ବାସ୍ତବରେ ଦେଖିବାକୁ ଗଲେ ଯେତେ ଲୋକ, ସେତେ ଧର୍ମ । କିନ୍ତୁ ଯେଉଁମାନଙ୍କ

ମଧ୍ୟରେ ରାଷ୍ଟ୍ରୀୟଚାର ଭାବନା ଥାଏ, ସେମାନଙ୍କ ମଧ୍ୟରୁ କେହି ଅନ୍ୟ ଜଣଙ୍କର ଧର୍ମରେ ହସ୍ତକ୍ଷେପ କରନ୍ତି ନାହିଁ । ଯଦି ସେମାନେ ତାହା କରନ୍ତି, ତେବେ ସେମାନେ ଗୋଟିଏ ରାଷ୍ଟ୍ର ବୋଲାଇବାକୁ ଉପଯୁକ୍ତ ନୁହନ୍ତି ବୋଲି କହିବାକୁ ହେବ । ଯଦି ହିନ୍ଦୁମାନେ ଭାବନ୍ତି ଯେ ଭାରତବର୍ଷରେ କେବଳ ହିନ୍ଦୁମାନେ ରହିବେ, ତେବେ ସେମାନେ ସ୍ୱପ୍ନରାଜ୍ୟରେ ବାସ କରୁଛନ୍ତି । ଯଦି ମୁସଲମାନମାନେ ଭାବନ୍ତି ଯେ ଭାରତରେ କେବଳ ମୁସଲମାନମାନେ ରହିବେ, ତେବେ ସେମାନେ ମଧ୍ୟ ସ୍ୱପ୍ନ-ରାଜ୍ୟରେ ଅଛନ୍ତି ବୋଲି ବିଚାରିବାକୁ ହେବ ( ହିନ୍ଦୀ ବହିରୁ ) । ତେଣୁ ହିନ୍ଦୁ, ମୁସଲମାନ, ପାରସୀ, ଖ୍ରୀଷ୍ଟାନ, ପ୍ରଭୃତି ଯେଉଁମାନେ ଏ ଦେଶକୁ ନିଜର ଦେଶ କରିସାରିଛନ୍ତି, ସେମାନେ ସମସ୍ତେ ଏକ ଦେଶୀୟ ଭାଇ ଭାଇ, ଏବଂ ସେମାନଙ୍କୁ ପରସ୍ପରର ସ୍ୱାର୍ଥରକ୍ଷା ପାଇଁ ନିଶ୍ଚୟ ଏକତାବଦ୍ଧ ହୋଇ ରହିବାକୁ ହେବ । ପୃଥିବୀର କୌଣସି ଦେଶରେ ଏକ ରାଷ୍ଟ୍ର କହିଲେ ଏକ ଧର୍ମ ବୁଝାଏ ନାହିଁ । ଭାରତରେ ମଧ୍ୟ ଏହା କେବେହେ ସେପରି ହୋଇନାହିଁ ।

ପାଠକ - ମାତ୍ର ହିନ୍ଦୁ-ମୁସଲମାନଙ୍କ ମଧ୍ୟରେ ଯେଉଁ ଜନ୍ମଗତ ଶତ୍ରୁତା ରହିଛି ସେଥିପାଇଁ କ'ଣ କରାଯିବ ?

ସଂପାଦକ—ହିନ୍ଦୁ-ମୁସଲମାନ ଉଭୟଙ୍କର ଶତ୍ରୁ ହିଁ ଏହି 'ଜନ୍ମଗତ ଶତ୍ରୁତା' କଥାଟା ଉଦ୍‌ଭାବନ କରିଛନ୍ତି ଯେତେବେଳେ ହିନ୍ଦୁ ଓ ମୁସଲମାନମାନେ ପରସ୍ପର ମଧ୍ୟରେ ଯୁଦ୍ଧ କରୁଥିଲେ, ସେତେବେଳେ ସେମାନେ ସେହି ପ୍ରକାରର କଥାବାର୍ତ୍ତା କରୁଥିଲେ । ସେ ଯୁଦ୍ଧ ତ କେଉଁକାଳୁ ବନ୍ଦ ହୋଇଗଲାଣି । ପୁଣି ଜନ୍ମଗତ ଶତ୍ରୁତା ଆସିଲା କୁଆଡ଼ୁ ? ପୁଣି ଏତକ ମଧ୍ୟ ମନେ ରଖନ୍ତୁ ଯେ ଇଂରେଜମାନେ ଏ ଦେଶକୁ ଆସିବା ପରେ ଏ ଯୁଦ୍ଧ

ଏ ଯୁଦ୍ଧ ବନ୍ଦ ହୋଇନାହିଁ । ଅର୍ଥାତ୍ ତାହା ଆଗରୁ ବନ୍ଦ ହୋଇ ଯାଇଥିଲା । ହିନ୍ଦୁମାନେ ମୁସଲମାନ ରାଜାମାନଙ୍କ ଅଧୀନତାରେ ଓ ମୁସଲମାନମାନେ ହିନ୍ଦୁ ରାଜାଙ୍କ ଅଧିନତାରେ ବେଶ୍ ସୁଖସ୍ୱାଚ୍ଛନ୍ଦ୍ୟରେ ବା ଉନ୍ନତ ଅବସ୍ଥାରେ ଥିଲେ । ପ୍ରତ୍ୟେକ ପକ୍ଷ ବୁଝି ପାରିଥିଲେ ଯେ ପରସ୍ପର ମଧ୍ୟରେ ଲଢ଼େଇ ଆତ୍ମଘାତି ଅଟେ । ଅସ୍ତ୍ରଶସ୍ତ୍ର ବା ଯୁଦ୍ଧର ଉପରେ କେହି ନିଜ ଧର୍ମ ଛାଡ଼ିବ ନାହିଁ । ସେଥିପାଇଁ ଉଭୟେ ମିଳି ମିଶି ଶାନ୍ତିରେ ରହିବାକୁ ସ୍ଥିର କରି ସାରିଥିଲେ । ଇଂରେଜମାନଙ୍କର ପ୍ରବେଶ ଫଳରେ ଏ କଳି ପୁନର୍ବାର ଆରମ୍ଭ ହେଲା ।

ଯେତେବେଳେ ଉଭୟ ସଂପ୍ରଦାୟ ଲଢ଼େଇ କରୁଥିଲେ, ସେତେବେଳେ ବ୍ରାହ୍ମଣ ଓ ପଠାଣ ଏକମୁହାଁ ହେବେ ନାହିଁ, ପ୍ରବଚନଟି କୁହା ଯାଉଥିଲା । ବର୍ତ୍ତମାନ ସେ କଥାକୁ ଦୋହରାଇବା ଆମ ପକ୍ଷରେ କ୍ଷତି କାରକ । ବହୁତ ହିନ୍ଦୁ ଓ ମୁସଲମାନଙ୍କର ପୂର୍ବ ପୁରୁଷ ଏକ ଏବଂ ଏକା ରକ୍ତ ଯେ ସେମାନଙ୍କ ଶିରପ୍ରଶିରରେ ପ୍ରବାହିତ ଏ କଥା ଆମ୍ଭମାନଙ୍କର ସ୍ମରଣ କରିବା ଉଚିତ ନୁହେଁ କି ? ଧର୍ମ ବଦଳିଗଲେ କ'ଣ ଲୋକ ଶତ୍ରୁ ହୋଇଯାନ୍ତି ? ଏକା ଲକ୍ଷ୍ୟ ସ୍ଥଳରେ ପହଞ୍ଚିବା ପାଇଁ ବିଭିନ୍ନ ଧର୍ମ କେବଳ ଭିନ୍ନ ଭିନ୍ନ ବାଟ । ଯଦି ଏକ ଲକ୍ଷ୍ୟ ସ୍ଥଳରେ ପହଞ୍ଚିବାକୁ ଆମେ ଅଲଗା ଅଲଗା ବାଟ ଧରିଲୁଁ, ସେଥିରେ କ୍ଷତି କଅଣ ? ସେଥିରେ କଳି କରିବାର କାରଣ କ'ଣ ଅଛି ?

ପୁଣି ଶୈବ ଓ ବୈଷ୍ଣବଙ୍କ ଭିତରେ ମଧ୍ୟ ସେହିପରି ବିଦ୍ୱେଷ ଜନକ ପ୍ରବଚନ ଅଛି । ସେଥିଯୋଗୁଁ ସେମାନେ ଏକା ରାଷ୍ଟ୍ରର ପ୍ରଜା ନୁହନ୍ତି ବୋଲି ତ କେହି କହନ୍ତି ନାହିଁ । ବୈଦିକ ଧର୍ମ ଓ ଜୈନ ଧର୍ମ ଭିତରେ ବହୁତ ପାର୍ଥକ୍ୟ ଅଛି ବୋଲି ଅନେକ କହନ୍ତି ।

ମାତ୍ର ସେଥିଯୋଗୁଁ ସେହି ସେହି ମତର ଲୋକେ ଅଲଗା ରାଷ୍ଟ୍ରର ପ୍ରଜା ହୋଇ ଯାଇ ନାହାନ୍ତି । ଅସଲ କଥା ହେଉଛି ଯେ ଆମେ ଗୋଲାମ ହୋଇ ଯାଇଛୁଁ ଏବଂ ସେହି ହେତୁ ଆମେ କଳି ଲଗାଇଛୁଁ ଏବଂ ଗୋଟିଏ ତୃତୀୟ ପକ୍ଷ ଦ୍ୱାରା ତାହାକୁ ନିଷ୍ପତ୍ତି କରାଇବାକୁ ଖୋଜୁଁଛୁ । ମୁସଲମାନ ଯେପରି ମୂର୍ତ୍ତିପୂଜାର ବିରୋଧୀ, ହିନ୍ଦୁମାନଙ୍କ ମଧ୍ୟରେ ମଧ୍ୟ ସେହିପରି ମୂର୍ତ୍ତିପୂଜାର ଖଣ୍ଡନକାରୀ ଅଛନ୍ତି । ଆମେ ଯେତେ ବେଶୀ ବେଶୀ ପ୍ରକୃତ ଜ୍ଞାନ ଲାଭରେ ଅଗ୍ରସର ହେଉଥିବୁଁ ସେତେ ଆମେ ଉପଲବ୍ଧି କରୁଥିବୁଁ ଯେ, ଭିନ୍ନ ଧର୍ମାବଲମ୍ବୀମାନଙ୍କ ସହିତ ଶତ୍ରୁତା କରିବା ଆମ ପକ୍ଷରେ ସମୀଚୀନ ନୁହେଁ ।

ପାଠକ—ଗୋ-ରକ୍ଷା ସମ୍ବନ୍ଧରେ ଆପଣଙ୍କର ବିଚାର କହନ୍ତୁ ।

ସମ୍ପାଦକ—ମୁଁ ନିଜେ ଗୋ-ଜାତିକୁ ପୂଜାକରେଁ, ଅର୍ଥାତ୍ ମୁଁ ଗୋରୁକୁ ଶ୍ରଦ୍ଧା ସହକାରେ ସମ୍ମାନ କରେଁ । ଗୋରୁ ଭାରତବର୍ଷର ଲୋକଙ୍କୁ ବଞ୍ଚାଇଛି, କାରଣ କୃଷିପ୍ରଧାନ ଦେଶ ହୋଇ ଥିବାରୁ ଆମେ ଗୋ-ଜାତି ଉପରେ ସମ୍ପୂର୍ଣ୍ଣ ନିର୍ଭର କରୁଁ । ଗୋ-ଜାତି ଅଶେଷ ପ୍ରକାରେ ଆମର ହିତକାରୀ । ଏ କଥା ଆମର ମୁସଲମାନ ଭାଇମାନେ ମଧ୍ୟ ସ୍ୱୀକାର କରିବେ ।

ମାତ୍ର ମୁଁ ଗୋମାତାକୁ ଯେତିକି ସମ୍ମାନ କରେଁ, ମୋର ମନୁଷ୍ୟ ଭାଇମାନଙ୍କୁ ମଧ୍ୟ ସେତିକି ସମ୍ମାନ କରେଁ । ଗୋରୁ ଯେପରି ଉପଯୋଗୀ, ମଣିଷ ହିନ୍ଦୁ ହେଉ ବା ମୁସଲମାନ ହେଉ, ସେହିପରି ହିତକାରୀ । ତାହାହେଲେ କଅଣ ମୁଁ ଗୋଟିଏ ଗୋରୁକୁ ରକ୍ଷା କରିବା ପାଇଁ ମୁଁ ଜଣେ ମୁସଲମାନକୁ ହତ୍ୟା କରିବି ବା ତାହା

ସତ୍ୟତ ଲଢ଼େଇ କରିବ ? ତାହା କଲେ ମୁଁ ମୁସଲମାନ ଓ ଗୋରୁ ଉଭୟଙ୍କର ଶତ୍ରୁ ହୋଇଯିବ । ସେଥିପାଇଁ ଗୋ-ରକ୍ଷାର ଏକମାତ୍ର ଉପାୟ ହେଉଛି ଯେ, ଆମ ଦେଶର ହିତ ଦୃଷ୍ଟିରୁ ମୋର ମୁସଲମାନ ଭାଇଙ୍କୁ ନିବେଦନ କରିବ ଓ ବୁଝାଇବ ଯେ ଗୋ-ଜାତିକୁ ରକ୍ଷା କରିବା ପାଇଁ ଆମ ସହିତ ଯୋଗ ଦିଅନ୍ତୁ । ସେମାନେ ଯଦି ସେ କଥା ନ ବୁଝିବେ, ତେବେ ମୋର କେବଳ ଅସାମର୍ଥ୍ୟ କାରଣରୁ ଗୋରୁକୁ ବଞ୍ଚାଇବା କଥା ଛାଡ଼ିଦେବ । ଯଦି ମୋ' ହୃଦୟରେ ଅସୀମ କରୁଣା ଥିବ, ତେବେ ମୋର ନିଜ ଜୀବନ ସେଥିପାଇଁ ଉତ୍ସର୍ଗ କରିଦେବ; ମାତ୍ର ନିଜ ଭାଇର ପ୍ରାଣ ନେବ ନାହିଁ । ଏହା ହିଁ ଆମ ଧର୍ମର ନୀତି ବୋଲି ମୋର ଦୃଢ଼ ବିଶ୍ୱାସ ।

ଲୋକେ ଜିଦ୍‌ଖୋର୍ ହେଲେ, ଅବସ୍ଥା ବିଷମ ହୁଏ । ମୁଁ ଯଦି ଯୁକ୍ତିତର୍କ କରିବ, ତେବେ ମୋର ମୁସଲମାନ ଭାଇ ମଧ୍ୟ ଯୁକ୍ତିତର୍କ କରିବେ । ମୁଁ ଯଦି ଟେଢ଼ା ବ୍ୟବହାର କରିବ, ତେବେ ସେ ମଧ୍ୟ ସେପରି କରିବେ । ମୁଁ ଯଦି ତାଙ୍କୁ ନମସ୍କାର କରିବ, ତେବେ ସେ ମଧ୍ୟ ମୋତେ ନମସ୍କାର ବା ସଲାମ୍ କରିବେ ଏବଂ ଯଦି ସେ ନମସ୍କାର ନ କରିବେ, ତେବେ ମୋ ନମସ୍କାର କରିବାଟାକୁ ଭୁଲ୍ କୁହାଯିବ ନାହିଁ । ହିନ୍ଦୁମାନେ ଯେତେବେଳେ ଜିଦ୍ ଧରିଲେ, ସେତେବେଳେ ଗୋହତ୍ୟା ବଢ଼ିଗଲା । ମୋ ମତରେ ଗୋରକ୍ଷା ପ୍ରଚାରିଣୀ ସମିତିଗୁଡ଼ିକୁ ଗୋବଧ-ପ୍ରଚାରିଣୀ ସମିତି ଡାକିବା ଉଚିତ । ଏ ପ୍ରକାରର ଅନୁଷ୍ଠାନର ଆବଶ୍ୟକତା ଆମ ପାଇଁ ନିନ୍ଦାର କଥା । ଆମେ ଗୋରକ୍ଷା କରିବାର ଉପାୟ ଭୁଲି ଯିବାରୁ ଏପରି ଅନୁଷ୍ଠାନର ଆବଶ୍ୟକତା ପଡ଼ିଲା ବୋଲି ମୋର ମନେ ହେଉଛି ।

ଯଦି ମୋର ରକ୍ତସଂପର୍କୀୟ ଭାଇ ଗୋରୁକୁ ହତ୍ୟା କରିବାକୁ ବାହାରେ ତେବେ ମୁଁ କଅଣ କରିବି ? ତାକୁ ମାରିଦେବି ନା, ତାହାର ଗୋଡ଼ତଳେ ପଡ଼ି ତାକୁ ନିବୃତ୍ତ ହେବାପାଇଁ ଅନୁନୟ କରିବି ? ଆପଣ ଯଦି କହିବେ ଯେ, ତାହାର ଗୋଡ଼ତଳେ ପଡ଼ିବା ଉଚିତ, ତେବେ ମୋର ମୁସଲମାନ-ଭାଇଙ୍କ ଗୋଡ଼ତଳେ ମଧ୍ୟ ପଡ଼ିବା ଉଚିତ ।

ଯେତେବେଳେ ହିନ୍ଦୁ ଗୋ-ଜାତି ପ୍ରତି ନିଷ୍ଠୁର ବ୍ୟବହାର କରେ ଓ ତାହା ଫଳରେ ଗୋ-ଜାତିକୁ ଧ୍ୱଂସ କରେ, ସେହି ଧ୍ୱଂସରୁ ଗୋଜାତିକୁ କିଏ ରକ୍ଷାକରେ ? ଗାଈର ବାଛୁରିକୁ (ବଳଦକୁ) ଯେତେବେଳେ ହିନ୍ଦୁ ନିର୍ଦ୍ଦୟ ଭାବରେ ପାଞ୍ଚଣରେ ମାଡ଼ ଦିଏ, ସେତେବେଳେ ସେହି ହିନ୍ଦୁକୁ କିଏ ବୁଝାଏ ? କିନ୍ତୁ ତତ୍‌ସତ୍ତ୍ୱେ ହିନ୍ଦୁମାନେ ଆମେ ଗୋଟିଏ ଜାତି ହେବାରେ କୌଣସି ବାଧା ଉପୁଜ ନାହିଁ ।

ଶେଷରେ ହିନ୍ଦୁ ଜୀବହିଂସା ନ କରିବାରେ ବିଶ୍ୱାସ କରେ ମାତ୍ର ମୁସଲମାନର ସେ ବିଶ୍ୱାସ ନାହିଁ । ତେବେ ମୁଁ ପଚାରୁଛି, ହିନ୍ଦୁର କର୍ତ୍ତବ୍ୟ କଅଣ ? ଅହିଂସା-ଧର୍ମ (ହତ୍ୟା ନ କରିବାର ନୀତି) ପାଳନକାରୀ ତାହାର ମନୁଷ୍ୟ-ଭାଇକୁ ହତ୍ୟା କରିପାରେ, ଏହା କେଉଁଠି ହେଲେ ଲେଖାନାହିଁ । ଅହିଂସକ ଲୋକ ପାଇଁ ବାଟ ସିଧା ସଳଖ । ଗୋଟିଏ ପ୍ରାଣୀକୁ ରକ୍ଷା କରିବା ପାଇଁ ଅନ୍ୟ ଗୋଟିଏ ପ୍ରାଣୀକୁ ହତ୍ୟା କରିବା ଅନୁଚିତ । ସେ କେବଳ ସେଥିପାଇଁ ତାକୁ ବୁଝାଇ ପାରେ ଏବଂ ସେଇଥିରେ ହିଁ ତାହାର ସମଗ୍ର କର୍ତ୍ତବ୍ୟ ନିହିତ ।

କିନ୍ତୁ ପ୍ରତ୍ୟେକ ହିନ୍ଦୁ ଅହିଂସାରେ ବିଶ୍ୱାସ କରେ କି ? ବିଷୟର ମୂଳକୁ ଯାଇ ଗଭୀର ଭାବରେ ବିଚାର କଲେ ଦେଖାଯିବ

ଯେ ଜଣେ ସୁଦ୍ଧା ଏହି ଅହିଂସାର ଧର୍ମ ଆଚରଣ କରନ୍ତି ନାହିଁ, କାରଣ ଆମେ ନିଶ୍ଚୟ ଜୀବ ବଧ କରୁଅଛୁଁ । କିନ୍ତୁ ସେହି ଜୀବ-ହତ୍ୟା କରିବାରୁ ଆମେ ମୁକ୍ତ ହେବାକୁ ଚେଷ୍ଟା ଥିବାରୁ ଆମେ ଅହିଂସା-ଧର୍ମ ପାଳନ କରୁଛୁଁ ବୋଲି କୁହାଯାଇଥାଏ । ସାଧାରଣ ଭାବରେ କହିଲେ ଦେଖାଯିବ ଯେ ବହୁ ସଂଖ୍ୟକ ହିନ୍ଦୁ ମାଂସ ଖାଆନ୍ତି । ଅତଏବ, ସେମାନେ ଅହିଂସାର ଆଚରଣକାରୀ ନୁହନ୍ତି । ହିନ୍ଦୁମାନେ ଅହିଂସାରେ ବିଶ୍ୱାସ କରନ୍ତି ଓ ମୁସଲମାନମାନେ ସେଥିରେ ବିଶ୍ୱାସ କରନ୍ତି ନାହିଁ ବୋଲି ଏ ଦୁଇ ସଂପ୍ରଦାୟ ଏକତ୍ର ମିଳିମିଶି ରହି ପାରିବେ ନାହିଁ—ଏହା କହିବା ଅଯୌକ୍ତିକ ଅଟେ ।

ସ୍ୱାର୍ଥପର ଓ ଭଣ୍ଡ ଧର୍ମଗୁରୁମାନେ ଏହି ବିଚାରମାନ ଆମ ମୁଣ୍ଡରେ ପୂରାଇଛନ୍ତି । ଆମର ଆଜି ଯାହା ଭୁଲ ବୁଝିବାକୁ ବାକି ଥିଲା, ଇଂରେଜମାନେ ସେତିକ ପୂରା କରିଦେଲେ । ଇତିହାସ ଲେଖିବାର ଅଭ୍ୟାସ ସେମାନଙ୍କର ଅଛି । ପ୍ରତ୍ୟେକ ଦେଶର ଲୋକମାନଙ୍କର ରୀତିନୀତି, ପ୍ରଥା ସେମାନେ ଅଧ୍ୟୟନ କରିଛନ୍ତି ବୋଲି ସେମାନଙ୍କର ଅହଙ୍କାର ଅଛି । ଭଗବାନ ଆମକୁ ସୀମାବଦ୍ଧ ମାନସିକ ଶକ୍ତି ଦେଇଛନ୍ତି ମାତ୍ର ସେମାନେ ନିଜେ ଭଗବାନଙ୍କର କାର୍ଯ୍ୟକୁ ଛଡ଼ାଇ ନିଅନ୍ତି ଏବଂ ନାନା ଅଦ୍ଭୁତ ପରୀକ୍ଷା କରନ୍ତି । ସେମାନେ ନିଜର ଗବେଷଣା ବିଷୟରେ ଅତି ପ୍ରଶଂସା କରି ଲେଖିଛନ୍ତି ଏବଂ ଆମ ମନକୁ ସେଥିରେ ଏପରି ମୋହିତ କରି ଦିଅନ୍ତି ଯେ ସେଗୁଡ଼ାକୁ ଆମେ ବିଶ୍ୱାସ କରିଥାଉଁ । ଆମର ଅଜ୍ଞତା ହେତୁ ଆମେ ତାଙ୍କର ଉପରେ ନିର୍ଭର କରିଥାଉଁ ।

ଯେଉଁମାନେ ଭ୍ରାନ୍ତଧାରଣାର ବଶବର୍ତ୍ତୀ ହେବାକୁ ନ ଚାହିଁବେ, ସେମାନେ କୋରାନ ଶରୀଫ୍ ପଢ଼ିଲେ ଦେଖିବେ ଯେ ସେଥିରେ ଶହ ଶହ ପରିଚ୍ଛେଦ (ସୁରା) ଅଛି, ଯେଉଁଗୁଡ଼ିକ ହିନ୍ଦୁମାନଙ୍କର ମଧ୍ୟ ସ୍ୱୀକାର୍ଯ୍ୟ । ଭଗବଦ୍‌ଗୀତାରେ ମଧ୍ୟ ଏପରି କଥା ଲେଖା ହୋଇଛି ଯାହା ସହିତ ମୁସଲମାନମାନଙ୍କର ମତଭେଦ ହୋଇ ନ ପାରେ । କୋରାନ୍ ଶରୀଫ୍‌ର କୌଣସି ଉପଦେଶ ଯଦି ମୁଁ ବୁଝି ନ ପାରିଲି, କିମ୍ବା ତାହାର କୌଣସି ଅଂଶ ଯଦି ମୋ ମନକୁ ନ ଆସିଲା, ସେଥିପାଇଁ କ'ଣ ମୁଁ କୋରାନକୁ ମାନୁଥିବା ମୁସଲମାନମାନଙ୍କୁ ଘୃଣା କରିବି ? ଗୋଟିଏ ହାତରେ ତାଳି ବାଜେ ନାହିଁ । ଦୁଇଜଣ ନ ହେଲେ କଳି ଲାଗେ ନାହିଁ । ମୁଁ ଯଦି କଳି ନ କରିବି, ତେବେ କୌଣସି ମୁସଲମାନ ମୋ ଉପରେ କଳି ଲଦି ଦେଇ ପାରିବେ ନାହିଁ । ସେହିପରି ଯଦି ମୁସଲମାନ ମୋ ସହିତ କଳି ନ କରିବ, ତେବେ ମୁଁ କଳି ଲଗାଇ ପାରିବି ନାହିଁ । ପବନକୁ ମାରିବା ପାଇଁ ହାତ ଉଞ୍ଚାଇଲେ ହାତର ଗଣ୍ଠି ଖସିଯିବ । ପ୍ରତ୍ୟେକ ଯଦି ନିଜ ଧର୍ମର ମୂଳତତ୍ତ୍ୱ ବୁଝିବାକୁ ଯତ୍ନ କରିବେ ଓ ସେଥିରେ ଦୃଢ଼ ରହିବେ ଏବଂ ଭଣ୍ଡ ଧର୍ମପ୍ରଚାରକମାନଙ୍କର ( ଶାସ୍ତ୍ରୀ ଓ ମୋଲ୍ଲାମାନଙ୍କର ) ପାଲରେ ନ ପଡ଼ିବେ, ତେବେ କଳିଗୋଳ ପାଇଁ କୌଣସି ଅବସର ରହିବ ନାହିଁ ।

ପାଠକ—ଇଂରେଜମାନେ କଅଣ ଏ ଦୁଇ ସମ୍ପ୍ରଦାୟଙ୍କୁ ଏକାଠି ମିଳିମିଶି ରହିବାକୁ ଦେବେ ?

ସମ୍ପାଦକ—ଏଇଟା ହେଉଛି ଭୀରୁ ଲୋକଙ୍କ ପ୍ରଶ୍ନ ଓ ଏଥିରୁ ଆମର ଆନ୍ତରିକତାର ଅଭାବ ଜଣାପଡ଼ୁଛି । ଯଦି ଦୁଇ ଭାଇ

ଶାନ୍ତରେ ମିଳମିଶି ରହିବାକୁ ଚାହିଁବେ, ତେବେ କୌଣସି ତୃତୀୟ ପକ୍ଷ ସେ ଦୁହିଁଙ୍କ ମଧ୍ୟରେ ଭେଦ ସୃଷ୍ଟି କରି ପାରିବ କି ? ଯଦି ତୃତୀୟ ପକ୍ଷର ପରାମର୍ଶ ସେମାନେ ଶୁଣନ୍ତି, ତେବେ ସେ ଦୁହିଁଙ୍କୁ ଆମେ ନିର୍ବୋଧ କହିବା । ଆମ୍ଭମାନଙ୍କୁ ( ହିନ୍ଦୁ ଓ ମୁସଲମାନ-ମାନଙ୍କୁ ) ପୃଥକ କରିବା ପାଇଁ ଯଦି ଆମେ ଇଂରେଜମାନଙ୍କୁ ସୁଯୋଗ ଦେଉଁ, ତେବେ ଇଂରେଜମାନଙ୍କୁ ଦୋଷ ଦେବା ପରିବର୍ତ୍ତେ ଆମର ନିର୍ବୋଧତାକୁ ଦୋଷ ଦେବା ଆମର ଉଚିତ । ଗୋଟିଏ ତେଲରେ ନ ଭାଙ୍ଗିଲେ, ଆଉ ଗୋଟିଏ ତେଲରେ ମାଟି ମାଠିଆ ଭାଙ୍ଗିଯିବ । ମାଠିଆଟିକୁ ରକ୍ଷା କରିବାର ଉପାୟ ହେଉଛି ମାଠିଆଟିକୁ ବିପଦଠାରୁ ଦୂରରେ ରଖିବା ନୁହେଁ ମାତ୍ର ତାକୁ ଏପରି ପୋଡ଼ିବା ଦରକାର, ଯେପରି ତାହା ତେଲରେ ଭାଙ୍ଗିବ ନାହିଁ । ସେହିପରି ଆମ ସଦ୍‌ଭାବକୁ ଦୃଢ଼ କରିବା ଦରକାର । ତାହାହେଲେ ସବୁ ବିପଦ ଆଗରେ ଆମେ ନିର୍ଭୟ ବା ଅଜେୟ ରହିପାରିବୁ । ହିନ୍ଦୁ ଓ ମୁସଲମାନ ଏହି ଦୁଇ ସଂପ୍ରଦାୟ ମଧ୍ୟରୁ ଯଦି ଗୋଟିକର ମନ ଟାଣ ହେବ, ତେବେ ତୃତୀୟ ପକ୍ଷ ( ଇଂରେଜମାନେ ) କିଛି କରି ପାରିବେ ନାହିଁ । ହିନ୍ଦୁମାନେ ଏହି ଏକତାର ଦୃଢ଼ତା ସହଜରେ ବଜାୟ ରଖି ପାରିବେ । ସେମାନଙ୍କର ସଂଖ୍ୟା ବେଶୀ, ସେମାନେ ଅଧିକ ଶିକ୍ଷିତ ବୋଲି ଗର୍ବ କରନ୍ତି । ସେଥିପାଇଁ, ମୁସଲମାନମାନଙ୍କ ସହିତ ସେମାନଙ୍କର ଭଲ ସଂପର୍କ ରକ୍ଷା କରିବାରେ କେହି ବାଧା ସୃଷ୍ଟି କଲେ, ସେମାନେ ସେହି ବାଧାରୁ ନିଜକୁ ରକ୍ଷା କରିବାରେ ଅଧିକ ସମର୍ଥ ।

ଏ ଦୁଇ ସଂପ୍ରଦାୟଙ୍କ ମଧ୍ୟରେ ପରସ୍ପର ପ୍ରତି ଅବିଶ୍ୱାସ ରହିଛି । ସେଥିପାଇଁ ମୁସଲମାନମାନେ ଲର୍ଡ଼ ମର୍ଲେଙ୍କଠାରୁ

କେତେକ ଅଧିକାର ଦାବୀ କରିଛନ୍ତି । ହିନ୍ଦୁମାନେ ତାହାର ବିରୋଧ କରିବେ କାହିଁକି ? ହିନ୍ଦୁମାନେ ଯଦି ସେଥିରୁ ବିରୋଧ କରିବାରୁ କ୍ଷାନ୍ତ ହେବେ, ତେବେ ଇଂରେଜମାନେ ତାକୁ ଲକ୍ଷ୍ୟ କରିବେ ଏବଂ ମୁସଲମାନମାନେ ଧୀରେ ଧୀରେ ହିନ୍ଦୁମାନଙ୍କୁ ବିଶ୍ୱାସ କରିବେ । ଫଳରେ, ଦୁହିଁଙ୍କ ମଧ୍ୟରେ ଭ୍ରାତୃଭାବ ବଢ଼ିବ । ଆମ ବିବାଦକୁ ଇଂରେଜଙ୍କ ଆଗକୁ ନେବାକୁ ଆମର ଲଜ୍ଜାବୋଧ କରିବା ଉଚିତ । ଏହା କଲେ, ହିନ୍ଦୁମାନଙ୍କର କୌଣସି କ୍ଷତି ହେବ ନାହିଁ । ଯେଉଁ ଲୋକ ଅନ୍ୟର ମନରେ ବିଶ୍ୱାସ ଉଦ୍ରେକ କରେ, ତାହାର ଏ ଜଗତରେ କୌଣସି କ୍ଷତି ହୁଏ ନାହିଁ ।

ହିନ୍ଦୁ ଓ ମୁସଲମାନେ କେବେହେଁ କଳି କରିବେ ନାହିଁ ବୋଲି ମୁଁ କହୁନାହିଁ । ଦୁଇ ଭାଇ ଏକା ସାଙ୍ଗରେ ରହିଲେ ବେଳେ ବେଳେ କଳିଗୋଳ ଲାଗେ । ଆମ ମୁଣ୍ଡ ବି ବେଳେ ବେଳେ ଫାଟିବ । ମୁଣ୍ଡ ଫାଟିବା ଆବଶ୍ୟକ ନୁହେଁ, କିନ୍ତୁ ସମସ୍ତେ ବୁଝିବା ସୁଝିବା ଲୋକ ହୋଇ ନ ଥାନ୍ତି । ଲୋକମାନେ କ୍ରୁଦ୍ଧ ବା ଉତ୍ତେଜିତ ହୋଇଗଲେ ଅନେକ ଭୁଲ ବା ମୂର୍ଖ କାମ କରି ପକାନ୍ତି । ସେଗୁଡ଼ାକୁ ଆମକୁ ବରଦାସ୍ତ କରିବାକୁ ପଡ଼ିଥାଏ । କିନ୍ତୁ ଆମ ମଧ୍ୟରେ କଳି ଲାଗିଲେ, ଆମେ ଓକିଲ ନିଯୁକ୍ତ କରୁଁ ନା କିମ୍ବା ଇଂରେଜଙ୍କ ନିକଟକୁ ବା ସେମାନଙ୍କର କୋର୍ଟ-କଚେରୀକୁ ବିଷୟଟିକୁ ନେଉଁ ନା । ଦୁଇଜଣ ଲୋକ ଲଢ଼େଇ କରନ୍ତି ଏବଂ ତନ୍ମଧ୍ୟରୁ ଜଣଙ୍କର ବା ଦୁହିଁଙ୍କଯାକର ମୁଣ୍ଡ ଫାଟେ । ମାତ୍ର ସେଥିରେ ତୃତୀୟ ପକ୍ଷ କିପରି ନ୍ୟାୟ ବିଚାର କରିବେ ? ଯେଉଁମାନେ ଲଢ଼େଇ କରନ୍ତି, ସେମାନେ ଆଘାତ ପାଇବା ବା ଟିକିଏ ଖାବରା ହେବା ସ୍ୱାଭାବିକ ।

# ଭାରତର ଅବସ୍ଥା-୪

## ଓକିଲ

ପାଠକ—ଆପଣ ମୋତେ କହୁଛନ୍ତି ଯେ, ଦୁଇଜଣ କଳି କଲେ, ସେମାନେ କୋର୍ଟ କଚେରିକୁ ଯିବାଉଚିତ ନୁହେଁ । ଏହା ତ ବିଚିତ୍ର କଥା ।

ସମ୍ପାଦକ—ଆପଣ ବିଚିତ୍ର କହନ୍ତୁ ବା ଆଉ କିଛି କହନ୍ତୁ, ଏହା ହିଁ ଖାଣ୍ଟି କଥା ବା ସତ୍ୟ । ଆପଣଙ୍କର ଏ ପ୍ରଶ୍ନ ଆମକୁ ଓକିଲ ଓ ଡାକ୍ତରଙ୍କ ପ୍ରସଙ୍ଗରେ ପହଞ୍ଚାଉଛି । ମୋର ଦୃଢ଼ ମତ ଯେ ଓକିଲମାନେ ଭାରତବର୍ଷକୁ ପରାଧୀନ କରିଛନ୍ତି, ସେମାନେ ହିନ୍ଦୁ ମୁସଲମାନ କଳିକୁ ବଢ଼ାଇଛନ୍ତି ଓ ଇଂରେଜ ଶାସନକୁ ମଜ୍‌ବୁତ୍ କରିଛନ୍ତି ।

ପାଠକ—ଏହି ଦୋଷାରୋପ କରିବା ସହଜ, ମାତ୍ର ତାହା ପ୍ରମାଣ କରିବା କଠିନ । ଓକିଲଙ୍କ ବିନା ଏ ସ୍ୱାଧୀନତାର ବାଟ ଆମକୁ କିଏ ଦେଖାଇ ଥାଆନ୍ତେ ? ସେମାନେ ନ ଥିଲେ, ଗରିବଙ୍କୁ କିଏ ରକ୍ଷା କରିଥାନ୍ତେ ? ଆମକୁ ନ୍ୟାୟ ବିଚାର କିଏ ଆଣିଦେଇ ଥାନ୍ତେ ? ଦେଖନ୍ତୁ, ସ୍ୱର୍ଗୀୟ ମନମୋହନ ଘୋଷ କିପରି ନିଜ୍‌ରେ କେତେ ଲୋକଙ୍କ ପାଇଁ ମକଦ୍ଦମା ଲଢ଼ିଲେ । ଯେଉଁ କଂଗ୍ରେସକୁ ଆପଣ ନିଜେ ଏତେ ପ୍ରଶଂସା କଲେ, ତାହା ନିଜର ଅସ୍ତିତ୍ୱ ଓ କାର୍ଯ୍ୟ ନିମିତ୍ତ ଓକିଲମାନଙ୍କର ପ୍ରଚେଷ୍ଟା ଉପରେ ନିର୍ଭର କରେ ।

ଏପରି ପ୍ରଶଂସନୀୟ ଶ୍ରେଣୀର ନିନ୍ଦା କରିବାଟା ସେମାନଙ୍କ ପ୍ରତି ଅନ୍ୟାୟ ହେଉଛି । ପୁଣି ଆପଣଙ୍କର ବିଜ୍ଞାପନ ଛପାଇବାର ସୁବିଧା ଅଛି । ଆପଣ ଓକିଲମାନଙ୍କୁ ଭର୍ତ୍ସନା କରିବାଦ୍ୱାରା ସେହି ଛାପିବାର ସ୍ୱାଧୀନତାର ଅପବ୍ୟବହାର କରୁଛନ୍ତି ।

ସମ୍ପାଦକ—ଆପଣ ଯାହା ଭାବୁଛନ୍ତି, ମୁଁ ମଧ୍ୟ ଏକ ସମୟରେ ଠିକ୍ ତାହା ଭାବୁଥିଲି । ଓକିଲମାନେ କେବେହେଁ କୌଣସି ଭଲ କାମ କରି ନାହାନ୍ତି ବୋଲି ଆପଣଙ୍କ ମନରେ ମୁଁ ଦୃଢ଼ ବିଶ୍ୱାସ ଜନ୍ମାଇବାକୁ ଚାହୁଁନାହିଁ । ମିଷ୍ଟର ମନମୋହନ ଘୋଷଙ୍କୁ ମୁଁ ସମ୍ମାନ କରେଁ । ସେ ଯେ ଗରିବ ଲୋକଙ୍କୁ ସାହାଯ୍ୟ କରିଥିଲେ, ତାହା ଠିକ୍ । କଂଗ୍ରେସ ଯେ ଓକିଲମାନଙ୍କଠାରେ ଋଣୀ, ଏ କଥା ବିଶ୍ୱାସ ବା ସ୍ୱୀକାର କରାଯାଇ ପାରେ । ଓକିଲ-ମାନେ ମଧ୍ୟ ମଣିଷ । ପ୍ରତ୍ୟେକ ମଣିଷଠାରେ କିଛି ନା କିଛି ଭଲଗୁଣ ଅଛି । ଓକିଲମାନଙ୍କ ମଧ୍ୟରେ ଯେତେବେଳେ ଭଲ କାମ କରୁଥିବାର ଯେଉଁ ଦୃଷ୍ଟାନ୍ତମାନ ଦେଖିବାକୁ ମିଳେ, ସେତେବେଳେ ଦେଖାଯିବ ଯେ, ସେହି ଭଲକାର୍ଯ୍ୟଗୁଡ଼ିକର ଶ୍ରେୟଃ ଓକିଲ ଭାବରେ ନ ପାଇ, ଲୋକ ଭାବରେ ସେମାନେ ପାଇବାକୁ ଯୋଗ୍ୟ । ଅର୍ଥାତ୍ ସେମାନେ ଉତ୍ତମ ଲୋକ ହୋଇଥିବାରୁ ସେପରି ଭଲକାମ କରି ପାରିଲେ । ଓକିଲାତି ବ୍ୟବସାୟ ଯେ ଲୋକ-ସାଧାରଣଙ୍କୁ ଅନୈତିକତା ଶିଖାଏ, ମୁଁ ଆପଣଙ୍କୁ କେବଳ ଏତିକି ଦେଖାଇ ଦେବାକୁ ଚାହେଁ । ଏ ପେଶାରେ ଏପରି ପ୍ରଲୋଭନ ରହିଛି ଯେ ସେଥିରୁ ଉଦ୍ଧାରିବା ଲୋକ ବହୁତ କମ୍ ଦେଖାଯାନ୍ତି ।

ହିନ୍ଦୁ-ମୁସଲମାନମାନେ ଆପଣା ଭିତରେ କଳିଗୋଳ କରନ୍ତି । ଜଣେ ସାଧାରଣ ଲୋକ ସେମାନଙ୍କୁ ଏହାହିଁ ପରାମର୍ଶ

ଦେବ ଯେ ଆପଣମାନେ କଳକଜାଆକୁ ପାଶୋର ପକାନ୍ତୁ । ଦୁହିଁଙ୍କର ତ କଛି କଛି ଦୋଷ ଥିବ, ବର୍ତ୍ତମାନ ଦୁହେଁ ମିଳିମିଶି ରହନ୍ତୁ । ମାତ୍ର ସେମାନେ ଯାଆନ୍ତି ଓକିଲ ପାଖକୁ । ମହକିଲର ପକ୍ଷ ସମର୍ଥନ କରିବା ହେଲା ଓକିଲର କର୍ତ୍ତବ୍ୟ । ମହକିଲମାନଙ୍କୁ ସୁଦ୍ଧା ଯେଉଁ ଯୁକ୍ତି ଜଣା ନ ଥିବ, ସେପରି ଯୁକ୍ତି ମହକିଲଙ୍କ ପକ୍ଷରୁ ଆଜି କାଢ଼ିବା ହେଲା ଓକିଲମାନଙ୍କର କାମ । ସେତକ ଯଦି ଓକିଲମାନେ ନ କରିବେ, ତେବେ ସେମାନଙ୍କର ପେଶାକୁ ହୀନ କରିଦେଲେ ବୋଲି ସେମାନଙ୍କୁ କୁହାଯାଏ । ସେଥିପାଇଁ ସାଧାରଣତଃ ଓକିଲମାନେ କଳିଗୋଳକୁ ମେଣ୍ଟାଇ ଦେବା ପରିବର୍ତ୍ତେ ଆହୁରି ବଢ଼ାଇ ଦେଇଥାନ୍ତି । କେତେ ଲୋକ ଯେ ଓକିଲ ହୋଇଚନ୍ତି ତାହାର ଉଦ୍ଦେଶ୍ୟ ଅନ୍ୟମାନଙ୍କର ଦୁଃଖ ଦୂର କରିବା ନୁହେଁ, ମାତ୍ର ନିଜେ ଧନୀ ହେବା । ଧନୀ ହେବାର ଏ ଗୋଟାଏ ପନ୍ଥା ଏବଂ କଳିଗୋଳ ବଢାଇବାରେ ସେମାନଙ୍କର ଲାଭ ବା ସ୍ୱାର୍ଥ ରହିଛି । ମୁଁ ଭଲକରି ଜାଣିଛି ଯେ କଳି ଲାଗିଲେ ଓକିଲ ଖୁସି ହୁଅନ୍ତି । ଛୋଟିଆ ଓକିଲ ଓ ମୁକ୍ତାରମାନେ କଳିକଜିଆ ଲୋକଙ୍କ ମଧ୍ୟରେ ସୃଷ୍ଟି କରନ୍ତି । ସେମାନଙ୍କର ଦଲାଲମାନେ (ଟାଉଟରମାନେ) ଗରିବ ଲୋକମାନଙ୍କଠାରୁ ଜୋକ ପରି ରକ୍ତ ଶୋଷି ନିଅନ୍ତି । ସେ ପେଶାଟା ଏପରି ଯେ ସେଥିରେ ନିଯୁକ୍ତ ଲୋକଙ୍କୁ କଳି ଲଗାଇବା ପାଇଁ ପ୍ରେରଣା ମିଳେ । ଓକିଲମାନେ ଏକ ଅକର୍ମା ଗୋଷ୍ଠୀ । ଅଳସୁଆ ଲୋକେ ଯେ ବିଳାସ ଉପଭୋଗ କରିବା ପାଇଁ ଓକିଲ ହୁଅନ୍ତି, ଏ କଥାଟି ସତ୍ୟ । ଅନ୍ୟାନ୍ୟ ଯୁକ୍ତି ଛଳନା ମାତ୍ର । ଓକିଲତି ପେଶାଟା ଭାରି ସମ୍ମାନ-ଜନକ ବୋଲି ଏହି ଓକିଲମାନେ ହିଁ ଆବିଷ୍କାର କରିଛନ୍ତି । ସେହିମାନେ ଆଇନ୍ ତିଆରି କରିଛନ୍ତି ଓ ସେହିମାନେ ନିଜର

ପ୍ରଶଂସା କରନ୍ତି । ଲୋକଙ୍କଠାରୁ ଓକିଲଣ୍ଡ ଫୀଜ୍ କେତେ ନେବାକୁ ହେବ, ସେ କଥା ମଧ୍ୟ ସେମାନେ ଠିକ୍ କରନ୍ତି । ଲୋକଙ୍କ ଉପରେ ପ୍ରଭାବ ପକାଇବା ପାଇଁ ସେମାନେ ଏପରି କୃତ୍ରିମତା ବା ଆଡ଼ମ୍ବର ଦେଖାନ୍ତି ଯେ, ଗରିବ ଲୋକେ ଭାବନ୍ତି ସତେ ଅବା ଏମାନେ ସ୍ୱର୍ଗର ଦେବପୁତ୍ର ।

ସାଧାରଣ ମୂଲିଆଙ୍କର ମଜୁରି ଅପେକ୍ଷା ଅଧିକ ଫୀଜ୍ ସେମାନେ କାହିଁକି ମାଗନ୍ତି ? ସେମାନଙ୍କର ଆବଶ୍ୟକତା ମୂଲିଆଙ୍କ ଆବଶ୍ୟକତାଠାରୁ ବେଶୀ ହେବ କାହିଁକି ? ସେମାନେ ମୂଲିଆମାନଙ୍କଠାରୁ ଦେଶର କି ଅଧିକ କଲ୍ୟାଣ କରୁଚନ୍ତି ? ଦେଶର କଲ୍ୟାଣ କରୁଥିବା ଲୋକଙ୍କର ବେଶୀ ପଇସା ନେବାର ଅଧିକାର ଅଛି କି ? ପୁଣି ପଇସା ପାଇବାପାଇଁ ଯଦି ସେମାନେ ଦେଶର ଉପକାର କରିଛନ୍ତି, ତେବେ ତାକୁ ଉପକାର କୁହାଯିବ କପରି ?

ହିନ୍ଦୁ-ମୁସଲମାନ ଦଂଗା ସମ୍ବନ୍ଧରେ ଯେଉଁମାନଙ୍କର ଅଭିଜ୍ଞତା ଅଛି, ସେମାନେ ଜାଣନ୍ତି ଯେ ଓକିଲଙ୍କ ଯୋଗୁଁ ଅନେକ ସମୟରେ ଦଂଗା ହୋଇଯାଇଛି । ଏହି ଓକିଲଙ୍କ ଯୋଗୁଁ କେତେ ପରିବାର ଧ୍ୱଂସ ହୋଇଯାଇଛି । ଓକିଲମାନେ ଭାଇ ଭାଇକୁ ଶତ୍ରୁ କରି ଦେଇଛନ୍ତି । କେତେ (ଗଡ଼ଜାତର) ଶାସକ ବା ରାଜା ଓକିଲଙ୍କ ଫାନ୍ଦରେ ପଡ଼ି ଋଣରେ ବୁଡ଼ି ଯାଇଛନ୍ତି, କେତେ ଜମିଦାର ଓକିଲଙ୍କ କାରସାଦି ଯୋଗୁଁ ସର୍ବସ୍ୱାନ୍ତ ହୋଇ ଋଣରେ ବୁଡ଼ି ଯାଇଛନ୍ତି, ଏହିପରି ବହୁତ ଦୃଷ୍ଟାନ୍ତ ଦେଇ ହେବ ।

କିନ୍ତୁ ସବୁଠାରୁ ବଡ଼ କ୍ଷତି ହେଉଛି ଯେ ଓକିଲମାନେ ଆମ ଉପରେ ଇଂରେଜମାନଙ୍କ ମୁଠାକୁ ଦୃଢ଼ କରିଛନ୍ତି । ଆପଣ କଅଣ ଭାବୁଛନ୍ତି ଯେ କୋର୍ଟକଚେରି ନ ଥିଲେ ଇଂରେଜମାନେ ଆମ

ଦେଶର ଶାସନ ଚଳାଇ ପାରୁଥାନ୍ତେ ? ଏ ଅଦାଲତଗୁଡ଼ାକ ଲୋକଙ୍କର ଉପକାର ପାଇଁ ଉଦ୍ଦିଷ୍ଟ ବୋଲି ଭାବିବା ଭୁଲ । ଯେଉଁ-ମାନେ ନିଜର କ୍ଷମତାକୁ ସ୍ଥାୟୀ କରିବାକୁ ଚାହାନ୍ତି, ସେହିମାନେ ଏ ଅଦାଲତ ଜରିଆରେ ତାହା କରିପାରୁଛନ୍ତି । ଲୋକେ ଯଦି କଳିଗୋଳ ସବୁ ଆପୋଷରେ ତୁଟାଇ ଦେବେ, ତେବେ ଏ ତୃତୀୟ ପକ୍ଷ ଆଉ ସେମାନଙ୍କ ଉପରେ କ୍ଷମତା ଜାରି କରି ପାରିବେ ନାହିଁ । ଦୃକ୍ତରେ ଲୋକେ ଯେତେବେଳେ ସେମାନଙ୍କର କଳିକଜିଆ ଲଢେଇ ଦ୍ୱାରା କିମ୍ବା ନିଜ ଆତ୍ମୀୟ ସ୍ୱଜନଙ୍କୁ ମଧ୍ୟସ୍ଥ ମାନି, ନିଷ୍ପତ୍ତି କରି ଦେଉଥିଲେ, ସେତେବେଳେ ଲୋକେ ଏତେ ଭୟାଳୁ ନ ଥିଲେ । କୋର୍ଟକଚେରୀର ଆଶ୍ରୟ ନେବା ଦିନଠାରୁ ସେମାନେ ନଂପୁଂସକ ବା ଡରୁଆ ପାଲଟି ଗଲେ । ଆପଣା ଭିତରେ ଲଢ଼େଇ କରି କଳି ନିଷ୍ପତ୍ତି କରିବା ଅବଶ୍ୟ ଅସଭ୍ୟ-ତାର ଚିହ୍ନ । କିନ୍ତୁ ଆମେ ତୃତୀୟ ପକ୍ଷକୁ କଳି ନିଷ୍ପତ୍ତି କରିବା ପାଇଁ ଡାକି ଆଣିବା କଅଣ ଉଣା ଅସଭ୍ୟତା ? ଏହି ତୃତୀୟ ପକ୍ଷର ରାୟ ସର୍ବଦା ଠିକ୍ ନୁହେଁ । କେଉଁ ପକ୍ଷ ସତ କହୁଛି ବା ନ୍ୟାୟରେ ଅଛି, ତାହା କେବଳ ସେହି ଦୁଇ ପକ୍ଷ ଜାଣିଥାନ୍ତି । ଆମେ ଆମ ଅଜ୍ଞତା ହେତୁ ଭାବୁଁ ଯେ ତୃତୀୟ ପକ୍ଷ ଅପରିଚିତ ହେଲେ ହେଁ, ଆମଠାରୁ ପଇସା ନେଇ ନ୍ୟାୟ ବିଚାର ଦିଏ ।

ସାରକଥା ହେଉଛି, ଓକିଲଙ୍କ ବିନା କୋର୍ଟକଚେରି ବସି ପାରି ନ ଥାନ୍ତା ବା ଚଳି ପାରନ୍ତା ନାହିଁ ଏବଂ ଏହି କୋର୍ଟକଚେରି ବ୍ୟତିରେକେ ଇଂରେଜମାନେ ଆମ ଉପରେ ଶାସନ ଚଳାଇ ପାରନ୍ତେ ନାହିଁ । ଯଦି କେବଳ ଇଂରେଜ ଜଜ୍, ଇଂରେଜ ଓକିଲ ଓ ଇଂରେଜ ପୋଲିସ ଓ ସୈନ୍ୟ ଏଠାରେ ଥାଆନ୍ତେ, ତେବେ ସେମାନେ କେବଳ ଇଂରେଜମାନଙ୍କ ଉପରେ ଶାସନ ଚଳାଇଥାନ୍ତେ ।

ଖାରଖାପ୍ସ ଜଜ୍ ଓ ଖାରଖାପ୍ସ ଓକିଲଙ୍କ ବିନା ସେମାନଙ୍କ କାମ ଚଳିଲା ନାହିଁ । ଏ ଓକିଲ-ଶ୍ରେଣୀ କିପରି ପ୍ରଥମେ ସୃଷ୍ଟି ହେଲ ଓ ସେମାନଙ୍କୁ କିପରି ସୁବିଧା ସୁଯୋଗ ଦିଆଗଲା, ସେ ସବୁ ଆପଣ ବୁଝି ପାରିଲେ, ଆପଣ ମଧ୍ୟ ମୋ ପରି ଏ ପେଷାକୁ ଘୃଣା କରିବେ । ଇଂରେଜ ଶାସନର ଗୋଟିଏ ବଡ଼ କଳ ହେଉଛି ଏହି କୋର୍ଟ-କଚେରି, ଏବଂ ଓକିଲ, ମୋକ୍ତାର, ବାରିଷ୍ଟରମାନେ ହେଉଛନ୍ତି ସେ କଳର ଗୋଟିଏ ପ୍ରଧାନ ଅଂଶ । ଯଦି ସେମାନେ ନିଜର ପେସା ଛାଡ଼ିଦେବେ ଓ ଏହି ପେଷାକୁ ବେଶ୍ୟାର ପେଶାଭଳି ନୀଚ ମଣିବେ, ତେବେ ଇଂରେଜ ଶାସନ ଏକା ଦିନକେ ଭାଙ୍ଗି ପଡ଼ିବ । ମାଛ ଯେପରି ପାଣିକୁ ଭଲ ପାଏ, ଆମେ ସେହିପରି କଳିକଜିଆ ଓ କୋର୍ଟ-କଚେରିକୁ ଭଲ ପାଉଁ । ଏହି ଅଭିଯୋଗ ଆମ ବିରୋଧରେ ଉଠାଇବାରେ ଏହି ଓକିଲ ମୋକ୍ତାର ଆଦି ଇଂରେଜମାନଙ୍କର ସହାୟକ ହୋଇଛନ୍ତି ।

ଓକିଲମାନଙ୍କ ପାଇଁ ମୁଁ ଯାହା ପ୍ରୟୋଗ କଲି, ତାହା ଜଜ୍‌ମାନଙ୍କ ପ୍ରତି ମଧ୍ୟ ପ୍ରଯୁଜ୍ୟ । ଏ ଦୁହେଁ ଖୁଡ଼ୀ ବା ମାଉସୀ ପୁଅ ଭାଇ ଓ ପରସ୍ପରକୁ ଶକ୍ତି ଯୋଗାନ୍ତି ।

# ଭାରତର ଅବସ୍ଥା-୪

## ଡାକ୍ତର

ପାଠକ—ଓକିଲମାନଙ୍କ କଥା ମୁଁ ବର୍ତ୍ତମାନ ବୁଝିଗଲି । ସେମାନେ ଭଲ କାମ ଯେତେ କରିଛନ୍ତି, ତାହା ଆକସ୍ମିକ । ସେମାନଙ୍କର ପେଶା ଯେ ଘୃଣ୍ୟ, ତାହା ମୋର ହୃଦ୍‌ବୋଧ ହେଲା । କିନ୍ତୁ ଆପଣ ଡାକ୍ତରମାନଙ୍କୁ ଓକିଲମାନଙ୍କ ସାଙ୍ଗରେ କାହିଁକି ଯୋଡ଼ୁଛନ୍ତି ?

ସମ୍ପାଦକ—ମୁଁ ଆପଣଙ୍କ ଆଗରେ ଯେଉଁ ବିଷୟ ଥୋଉଛି, ସେଗୁଡ଼ିକୁ (ଅନ୍ୟଠାରୁ) ମୁଁ ନିଜେ ଗ୍ରହଣ କରିଛି । ଏଗୁଡ଼ିକ ମୋର ନିଜର ମୌଳିକ ଚିନ୍ତା ନୁହେଁ । ପାଶ୍ଚାତ୍ୟ ଦେଶର ଲେଖକମାନେ ଓ ସଂସ୍କାରକମାନେ ମୋର ସମାଲୋଚନା-ଠାରୁ ବଳି କଠୋର ଭାଷାରେ ଏହି ଓକିଲାତି ଓ ଡାକ୍ତରୀ ପେଶା ସମ୍ବନ୍ଧରେ ଲେଖି ଯାଇଛନ୍ତି । ସେମାନେ ଓକିଲ ଓ ଡାକ୍ତର ଉଭୟଙ୍କର ବହୁତ ନିନ୍ଦା କରିଛନ୍ତି । ସେମାନଙ୍କ ମଧ୍ୟରୁ ଜଣେ ଲେଖକ ଗୋଟିଏ (Upas) ବିଷବୃକ୍ଷର ଚିତ୍ର କରି, ଓକିଲ, ଡାକ୍ତର ଆଦି ଅନାବଶ୍ୟକ ବ୍ୟବସାୟୀମାନଙ୍କୁ ସେ ଗଛର ଡାଳରୂପେ ଏବଂ ଏହି ଗଛର ଗଣ୍ଡି ଉପରକୁ ନୀତି-ଧର୍ମର କୁରାଢ଼ୀ ଉଞ୍ଚେଇବାର ଚିତ୍ର କରିଛନ୍ତି । ସେ କହିଛନ୍ତି ଅନୀତି ହେଉଛି ଏ ଗଛର ମୂଳ । ଏଥିରୁ ଆପଣ ବୁଝି ପାରିବେ ଯେ ଏ ନୂଆ ବିଷୟ

ମୋ ମନରୁ ସିଧା ବାହାର ନାହିଁ ମାତ୍ର ବହୁ ବ୍ୟକ୍ତିଙ୍କର ଅନୁଭବରୁ ଜନ୍ମଲାଭ କରିଛି । ଡାକ୍ତରୀ ପେଶା ପ୍ରତି ଆପଣଙ୍କର ଯେପରି ଶ୍ରଦ୍ଧା ବର୍ତ୍ତମାନ ସୁଦ୍ଧା ରହିଛି, ମୋର ମଧ୍ୟ ଏକସମୟରେ ସେପରି ଶ୍ରଦ୍ଧା ଥିଲା । ଏକ ସମୟରେ ମୁଁ ନିଜେ ଡାକ୍ତର ହେବାକୁ ମନ କରିଥିଲି ଏବଂ ଡାକ୍ତର ହୋଇ ଦେଶ-ସେବା କରିବି ବୋଲି ଭାବିଥିଲି । ବର୍ତ୍ତମାନ ସେ ମୋହ ଭାଙ୍ଗିଲାଣି । ବୈଦ୍ୟ ବା ଡାକ୍ତରମାନେ ଯେ ଆମ ସମାଜରେ କେବେହେଁ ସମ୍ମାନଜନକ ସ୍ଥାନ ପାଇନାହାନ୍ତି, ଏହାର କାରଣ ମୁଁ ଏବେ ଜାଣିଲି ।

ଇଂରେଜମାନେ ଡାକ୍ତରୀ ପେଶା ମାଧ୍ୟମରେ ବେଶ ସଫଳ ଭାବରେ ଆମକୁ ହାତମୁଠାରେ ରଖିଛନ୍ତି । ଡାକ୍ତରଙ୍କର ମଧ୍ୟ ଦୟା ଗୁଣ ନୁହେଁ । ଇଂରେଜ ଡାକ୍ତରମାନେ ଏସିଆର ରାଜାମହାରାଜାମାନଙ୍କ ଠାରୁ ରାଜନୈତିକ ଲାଭ ଉଠାଇବା ପାଇଁ ସେମାନଙ୍କର ଡାକ୍ତରୀଜ୍ଞାନ ବା ପେଶାକୁ ବ୍ୟବହାର କରିଥିଲେ ଏବଂ ଆମର ମୋଗଲ ବାଦଶାହାଙ୍କର ମସ୍ତିଷ୍କ-ଭ୍ରମ ଘଟାଇ ଦେଇଥିଲେ । ବାଦଶାହଙ୍କର ରାଜ-ପ୍ରାସାଦରେ ରୋଗ ଭଲ କଲାରୁ ଇଂରେଜ ଡାକ୍ତରଙ୍କୁ ସିରୋପା ମିଳିଲା । ଅମୀରମାନଙ୍କ ପାଖରେ ପହଞ୍ଚିବା ଲୋକ ମଧ୍ୟ ଏଇ ଡାକ୍ତରମାନେ ।

ଡାକ୍ତରମାନେ ଆମର ମୁଣ୍ଡ ଗୋଳମାଳ କରିଦେଇଛନ୍ତି । ଅନେକ ସମୟରେ ମୁଁ ଭାବେ ଯେ ବଡ଼ ବଡ଼ ଡାକ୍ତରଙ୍କଠାରୁ ଠୂଣିଠୂଣିଆ ଜାଣିବା ଲୋକେ ଓ ମାମୁଲି ବୈଦ୍ୟମାନେ ବରଂ ଭଲ । ଏ ବିଷୟରେ ବିଚାର କରି ଦେଖାଯାଉ । ଡାକ୍ତରଙ୍କର କାମ ହେଲା ଆମ ଶରୀରର ଯତ୍ନ ନେବା । ଯତ୍ନ ନେବା ମଧ୍ୟ ତାଙ୍କ କାମ ନୁହେଁ ବୋଲି କୁହାଯାଇପାରେ । ସେମାନଙ୍କର

ପ୍ରକୃତ କାମ ହେଲା ଦେହରେ ଯେଉଁ ରୋଗ ହେବ ତାହାକୁ ଦୂର କରିବା । ରୋଗ ହୁଏ କାହିଁକି ? ଆମର ଅସାବଧାନତାରୁ ବା ଅଧିକ ଉପଭୋଗରୁ । ମୁଁ ବହୁତ ଖାଇଦେଲି, ମୋର ଅଜୀର୍ଣ୍ଣ ହେଲା, ମୁଁ ଡାକ୍ତରଙ୍କ ପାଖକୁ ଗଲି ଓ ଔଷଧ ଖାଇ ଭଲ ହେଲି । ପୁଣି ମୁଁ ଅତ୍ୟାହାର କରେ ଏବଂ ମୁଁ ପୁଣି ଡ଼ାକ୍ତରଙ୍କର ବଟିକା ବା ଔଷଧ ଖାଇ ଆରୋଗ୍ୟ ଲାଭ କରେଁ । ଯଦି ମୁଁ ପ୍ରଥମ ଥର ବଟିକା ଖାଇ ନ ଥାନ୍ତି, ତେବେ ଅଜୀର୍ଣ୍ଣର ଦଣ୍ଡ ଭୋଗିଥାନ୍ତି ଏବଂ ପୁଣି ଅତ୍ୟଧିକ ଖାଦ୍ୟ ଖାଇ ନ ଥାନ୍ତି । ଅତ୍ୟଧିକ ଖାଇବା ରୂପକ ମୋର କୁକର୍ମ ଓ ରୋଗର ଯନ୍ତ୍ରଣା ଭୋଗିବା ମଧ୍ୟରେ ଡାକ୍ତର ହସ୍ତକ୍ଷେପ କଲେ ଏବଂ ମୋତେ ପୁଣି ଅତ୍ୟାହାର ବା ଅଧିକ ଉପଭୋଗ କରିବାରେ ପ୍ରଶ୍ରୟ ଦେଲେ । ତଦ୍ୱାରା ମୋ ଦେହ ସୁସ୍ଥ ବୋଧ ହେଲା, ମାତ୍ର ମୋର ମନ ଏହା ଫଳରେ ଦୁର୍ବଳ ହୋଇଗଲା । ଏହିରୂପେ ବାରମ୍ବାର ଔଷଧ ସେବନ ଫଳରେ ମୁଁ ମୋର ମନ ଉପରେ ସଂଯମ ହରାଇ ବସେଁ ।

ମୁଁ ବେଶ୍ୟାଗମନ, ଆଦି ପାପାଚାର କଲି, ଫଳରେ ମୁଁ ରୋଗଗ୍ରସ୍ତ ହେଲି । ଡାକ୍ତର ମୋତେ ଆରୋଗ୍ୟ କଲେ । ଖୁବ୍‌ସମ୍ଭବ, ଏହା ଫଳରେ ମୁଁ ପୁଣି ବ୍ୟଭିଚାରରେ ମାତିବି । ଡାକ୍ତର ଯଦି ଏଥିରେ ହସ୍ତକ୍ଷେପ କରି ନ ଥାନ୍ତେ, ତେବେ ପ୍ରକୃତି ନିଜର କାମକରି ଯାଇଥାନ୍ତା, ମୁଁ ନିଜକୁ ଆୟତ୍ତ କରିଥାନ୍ତି; ସଂଯମ ପାଳନ କରିଥାନ୍ତି, ସେହି ଦୁରଭ୍ୟାସରୁ ମୁକ୍ତ ହୋଇଥାନ୍ତି ଏବଂ ମୁଁ ସୁଖୀ ହୋଇଥାନ୍ତି ।

ହାସପାତାଳଗୁଡ଼ିକ ପାପ ବିସ୍ତାରର ଅନୁଷ୍ଠାନ । ସେଗୁଡ଼ିକ ଯୋଗୁଁ ଲୋକେ ନିଜ ଦେହର ଯତ୍ନ ଅଳ୍ପମାତ୍ରରେ ନେଉଛନ୍ତି ।

ଓ ବେଶୀ ଅନୈତିକ କାର୍ଯ୍ୟ କରୁଛନ୍ତି । ଏ ବିଷୟରେ ୟୁରୋପୀୟ ଡାକ୍ତରମାନେ ସବୁଠାରୁ ବେଶୀ ଦୋଷୀ । ସେମାନେ କେବଳ ଏ ଦେହର ଭ୍ରାନ୍ତ ଯତ୍ନ ନେବା ପାଇଁ ପ୍ରତିବର୍ଷ ଲକ୍ଷ ଲକ୍ଷ ଜୀବ ମାରୁଛନ୍ତି । ସେମାନେ ବୈଜ୍ଞାନିକ ପ୍ରୟୋଗ ଉଦ୍ଦେଶ୍ୟରେ (ଅନ୍ୟ) ଜୀବ ଉପରେ ଅପରେଶନ୍ କରୁଛନ୍ତି ଓ ନାନା ପରୀକ୍ଷା ଚଳାଇଛନ୍ତି । ଏ କାର୍ଯ୍ୟକୁ କୌଣସି ଧର୍ମ ଅନୁମୋଦନ କରେ ନାହିଁ । କୌଣସି ଧର୍ମ କହୁନାହିଁ ଯେ ଆମର ଦେହପାଇଁ ଏତେ ଜୀବ ମାରିବା ଆବଶ୍ୟକ ।

ଏହି ଡାକ୍ତରମାନେ ଧର୍ମ ସମ୍ବନ୍ଧରେ ଆମର ସହଜାତ ପ୍ରବୃତ୍ତିକୁ ନଷ୍ଟ କରିଦେଉଛନ୍ତି ସେମାନଙ୍କର ଅନେକ ଔଷଧରେ ଜୈବ ଚର୍ବି କି ସୁରା (ମଦ) ର ନିର୍ଯ୍ୟାସ ଥାଏ । ଏହି ଉଭୟ ପଦାର୍ଥ ହିନ୍ଦୁ-ମୁସଲମାନଙ୍କର ବ୍ୟବହାର କରିବା ନିଷିଦ୍ଧ ଅଟେ । ଆମେ ସଭ୍ୟ ବୋଲି ଛଳନା କରିପାରୁ, ଧର୍ମ ଯାହା ବାରଣ କରିଛି, ତାକୁ କୁସଂସ୍କାର କହି ସଚ୍ଛନ୍ଦ ଭାବରେ ଉଚ୍ଛୃଙ୍ଖଳ ହୋଇପାରୁ । ଡାକ୍ତରମାନେ ଯେ ଆମକୁ ବେଶୀ ଇନ୍ଦ୍ରିୟାସକ୍ତ ଓ ଧର୍ମ-ଭ୍ରଷ୍ଟ କରୁଛନ୍ତି, ଏହା ସତ କଥା । ଏହାର ପରିଣତି ହେଉଛି ଯେ ଆମେ ଅସଂଯମୀ ଏବଂ ସୌର୍ଯ୍ୟବୀର୍ଯ୍ୟହୀନ ହୋଇ ଯାଉଛୁ । ଏପରି ଦେଶରେ ଆମେ ଦେଶସେବା କରିବାକୁ ଅଯୋଗ୍ୟ । ଆମ ଦେହ କ୍ଷୀଣ ହୋଇଯାଉଛି ଓ ଆମେ ବୁଦ୍ଧିହୀନ ହୋଇଯାଉଛୁ । ୟୁରୋପୀୟ ଚିକିତ୍ସାଶାସ୍ତ୍ର ଅଧ୍ୟୟନ କରିବାର ଅର୍ଥ ଆମର ଦାସତ୍ୱ-ବନ୍ଧନକୁ ମଜବୁତ୍ କରିବା ।

ଆମେ ଡାକ୍ତରୀ ପେସା କାହିଁକି କରୁ, ସେଇଟା ମଧ୍ୟ ବିଚାର କରିବାର କଥା । ମାନବ-ସମାଜର ସେବା କରିବା ପାଇଁ

ଲୋକେ ଡାକ୍ତରୀ ପେସା ଧରନ୍ତି ନାହିଁ, ଏହା ନିଶ୍ଚିତ କଥା । ଧନ ଓ ସମ୍ମାନ ଅର୍ଜନର ଉଦ୍ଦେଶ୍ୟରେ ଆମେ ଡାକ୍ତର ହେଉଛୁଁ । ଏ ପେସାରେ ଯେ ପରୋପକାର ହୁଏ ନାହିଁ, ତାହା ମୁଁ କହି ସାରିଛି । ବରଂ ଓଲଟା, ଏ ପେସାରେ ଲୋକଙ୍କର ଅପକାର ହୁଏ । ଡାକ୍ତରମାନେ ସେମାନଙ୍କର ଜ୍ଞାନର ବଡ଼ିମା ଦେଖାଇ ଲୋକଙ୍କଠାରୁ ଅତ୍ୟଧିକ ଫୀଜ୍ ଅସୁଲ୍ କରନ୍ତି । ଯେଉଁ ଔଷଧ ତିଆରି କରିବାକୁ ମୂଳତଃ ଅଣାଏ ପଡ଼େ, ସେଥିପାଇଁ ସେମାନେ ଟଙ୍କାଏ ନିଅନ୍ତି । ସାଧାରଣ ଲୋକେ ସରଳ ବିଶ୍ୱାସରେ ଓ କୌଣସି ରୋଗରୁ ରକ୍ଷା ପାଇବାର ଆଶାରେ ପ୍ରତାରିତ ହୁଅନ୍ତି । ଏପରି ସ୍ଥଳେ, ଯେଉଁ ସାମାନ୍ୟ ଦେଶୀୟ ବୈଦ୍ୟମାନଙ୍କୁ ଆମେ ଚିହ୍ନୁ ବା ଜାଣୁଁ, ସେମାନେ ଏହି ପରୋପକାର ଦେଖାଇ ହେଉଥିବା ଡାକ୍ତରମାନଙ୍କ ଠାରୁ ଭଲ ନୁହନ୍ତି କି ?

# ପ୍ରକୃତ ସଭ୍ୟତା କଅଣ ?

ପାଠକ—ଆପଣ ରେଲୱେ, ଓକିଲ, ଓ ଡାକ୍ତରଙ୍କୁ ନାପସନ୍ଦ କରିବେଲେ । ମୁଁ ଅନୁମାନ କରୁଛି ଯେ ସବୁପ୍ରକାରର କଳକବ୍ଜାକୁ ଆପଣ ଅନାବଶ୍ୟକ ବା କ୍ଷତିକାରକ କହିବେ । ତାହାହେଲେ, ସଭ୍ୟତା କାହାକୁ କୁହାଯିବ ?

ସଂପାଦକ—ଏ ପ୍ରଶ୍ନର ଉତ୍ତର କଠିନ ନୁହେଁ । ମୋର ମତରେ ଭାରତବର୍ଷ ଯେଉଁ ସଭ୍ୟତାର କ୍ରମ-ବିକାଶ କରିଛି, ତାହା ସହିତ ପୃଥିବୀର କୌଣସି ସଭ୍ୟତା ସରି ହୋଇ ପାରିବ ନାହିଁ । ଆମ ପୂର୍ବପୁରୁଷ ଯେଉଁ ବୀଜ ବୁଣିଦେଇ ଯାଇଛନ୍ତି, ତାହାର ସମକକ୍ଷ ହେଲଭଳି ଆଜି କିଛି ଦେଖାଯାଉ ନାହିଁ । ରୋମ୍ ମାଟିରେ ମିଶିଗଲା, ଗ୍ରୀସ୍‌ର ସେହି ଦଶା ଘଟିଲା ବା କେବଳ ନାଆଁଟା ବାକି ରହିଛି, ମିଶରର ରାଜବଂଶ ଲୋପ ପାଇଲା । ଜାପାନ ପାଶ୍ଚାତ୍ୟ ଦେଶର ପ୍ରଭାବରେ ପ୍ରଭାବିତ, ଚୀନ ବିଷୟରେ କିଛି କହିହେବ ନାହିଁ । କିନ୍ତୁ, କୌଣସି ପ୍ରକାରେ ଭାରତବର୍ଷର ମୂଳଦୂଆ ଆଜିଯାଏ ମଜବୁତ୍ ରହିଛି ।

ଯେଉଁ ଗ୍ରୀସ ଓ ରୋମ୍‌ର ପୂର୍ବ ଗୌରବ ଆଜି ନାହିଁ, ସେହି ଦେଶର ଲୋକମାନଙ୍କର ଲେଖାରୁ ୟୁରୋପୀୟମାନେ ଜ୍ଞାନ ଅର୍ଜନ କରୁଛନ୍ତି । ଗ୍ରୀସ ଓ ରୋମ୍ ଯେଉଁ ଭୁଲ କରିଯାଇଛନ୍ତି, ୟୁରୋପୀୟମାନେ ସେ ଭୁଲ ଆଜି କରିବେ ନାହିଁ ବୋଲି କଳ୍ପନା କରୁଛନ୍ତି । ଏହା ଦୟନୀୟ ଅବସ୍ଥା । ଏହି ପରିସ୍ଥିତିରେ

ଭାରତବର୍ଷ ଅଚଳ ଅଟଳ ହୋଇ ରହିଛି । ଏହା ହିଁ ଭାରତବର୍ଷ ପକ୍ଷରେ ଗୌରବର ବିଷୟ । ଭାରତବର୍ଷ ବିରୋଧରେ ଅଭିଯୋଗ ଯେ ଭାରତ ଏତେ ଅଜ୍ଞ, ଜଡ଼ ଓ ଅସଭ୍ୟ ଯେ, କୌଣସି ପରିବର୍ତ୍ତନ ଗ୍ରହଣ କରିବା ପାଇଁ ତାକୁ ପ୍ରବର୍ତ୍ତାଇ ହେବ ନାହିଁ । ଏ ଅଭିଯୋଗଟା ହିଁ ଆମର ଗୁଣ । ଆମେ ଯାହାକୁ ପରୀକ୍ଷା କରିଛୁ ଏବଂ ଅଭିଜ୍ଞତାରୁ ଆମେ ଯାହାକୁ ଠିକ୍ ବୋଲି ଜାଣିଛୁ, ତାକୁ କାହିଁକି ବଦଳେଇବୁ ? ଅନେକ ଭାରତବର୍ଷକୁ ବୁଦ୍ଧି ଦେଉଛନ୍ତି ମାତ୍ର ଭାରତ ଅଚଳ ଅଟଳ ରହିଛି । ଏହା ହିଁ ତାର ବୈଶିଷ୍ଟ୍ୟ, ଏହା ହିଁ ଆମ ଆଶାର ଆଲୋକ-ଶିଖା ।

ସଭ୍ୟତାର ବ୍ୟବହାରିକ ଲକ୍ଷଣ ହେଉଛି, ତାହା ମଣିଷକୁ ନିଜ କର୍ତ୍ତବ୍ୟ ପାଳନ କରିବାର ବାଟ ଦେଖାଏ । କର୍ତ୍ତବ୍ୟ ପାଳନ କରିବାର ଅର୍ଥ ହେଲା ନୈତିକତା ଆଚରଣ କରିବା । ନୈତିକତା ପାଳନର ଅର୍ଥ ହେଉଛି ନିଜ ମନ ଓ ଇନ୍ଦ୍ରିୟ-ଭୋଗଲାଳସାଗୁଡ଼ିକୁ ଆୟତ୍ତରେ ରଖିବା । ଏହା କରିବାଦ୍ୱାରା ଆମେ ନିଜକୁ ଚିହ୍ନିପାରୁ । ଏହା ହିଁ ସଦାଚାରର ସଭ୍ୟତା ବା ସଂସ୍କୃତି ।

ଅନେକ ଇଂରେଜ ଲେଖକ ଲେଖିଛନ୍ତି ଯେ, ଉପର୍ଯ୍ୟୁକ୍ତ ବ୍ୟାଖ୍ୟା ଅନୁସାରେ ଅନ୍ୟଠାରୁ ଭାରତବର୍ଷର ଆଉ କିଛି ଶିଖିବାକୁ ବାକି ନାହିଁ । କଥାଟା ଠିକ୍ । ଆମେ ଜାଣୁ ଯେ, ମଣିଷର ମନ ବଡ଼ ଚଞ୍ଚଳ । ତାହାର ମନ ଅକାରଣରେ ଏଣେ ତେଣେ ଧାଏଁ । ତାକୁ ଯେତେ ଦେଉଥିବ, ସେ ସେତେ ବେଶୀ ଚାହୁଁଥିବ । ଯେତେ ପାଇଲେ ହେଁ ସେ ସୁଖୀ ହୁଏ ନାହିଁ । ଆମେ ଯେତେ ଇନ୍ଦ୍ରିୟ-ସୁଖ ଭୋଗ କରୁ, ସୁଖଭୋଗର ଇଚ୍ଛା ସେତେ ଉତ୍ତରୋତ୍ତର ବଢ଼େ । ସେଥିପାଇଁ ଆମ ପୂର୍ବପୁରୁଷମାନେ ସୁଖଭୋଗର ସୀମା ନିର୍ଦ୍ଦିଷ୍ଟ କରି ଦେଇଥିଲେ । ସେମାନେ ବହୁତ ଚିନ୍ତା କରି ଦେଖିଛନ୍ତି ଯେ, ସୁଖ

ଦୁଃଖ ମନର ଗୋଟିଏ ଅବସ୍ଥା ମାତ୍ର । ଜଣେ ଧନୀ ବୋଲି ସେ ସୁଖୀ ଏବଂ ଆଉ ଜଣେ ଗରିବ ବୋଲି ଦୁଃଖୀ, ଏହା ସବୁବେଳେ ସତ ନୁହେଁ । ଅନେକ ସମୟରେ ଧନୀ ଲୋକ ଅସୁଖୀ ଓ ଗରିବ ଲୋକେ ସୁଖୀ ଦେଖାଯାଆନ୍ତି । କୋଟି କୋଟି ଲୋକ ତ ଗରିବ ରହିବେ । ଏହା ଦେଖି ଆମ ପୂର୍ବପୁରୁଷମାନେ ଆମକୁ ଭୋଗ-ବିଳାସରୁ ନିବୃତ୍ତ କରାଇ ଥିଲେ । ହଜାର ହଜାର ବର୍ଷ ପୂର୍ବରୁ ଯେଉଁ ଲଙ୍ଗଳରେ ଚାଷ ହେଉଥିଲା, ସେହି ଲଙ୍ଗଳରେ ଆମେ ଚାଷ କରୁଛୁ । ବହୁ ବର୍ଷ ପୂର୍ବରୁ ଆମର ଯେପରି କୁଡ଼ିଆ ଘର ଥିଲା, ଆମେ ସେହି କୁଡ଼ିଆ ରଖିଛୁ । ଆମର ସ୍ୱଦେଶୀୟ ଶିକ୍ଷା ପୂର୍ବେ ଯେପରି ଥିଲା, ଏବେ ମଧ୍ୟ ସେହିପରି ଚାଲିଛି । ସର୍ବନାଶ ଘଟାଇବା ପ୍ରତିଯୋଗିତା ଆମର ନ ଥିଲା । ପ୍ରତ୍ୟେକେ ନିଜର ବ୍ୟବସାୟ ବା ବୃତ୍ତି କରୁଥିଲେ ଏବଂ ଏପରି ବା ଏତିକି ପାରିଶ୍ରମିକ ନେଉଥିଲେ, ଯାହାଦ୍ୱାରା ସମାଜ ସ୍ୱତଃ ନିୟନ୍ତ୍ରିତ ହୋଇ ଚାଲିଥିଲା । ଆମକୁ ଯେ କଳକବ୍‌ଜା ଉଦ୍ଭାବନ କରି ଆସୁ ନ ଥିଲା, ତାହା ନୁହେଁ । ଆମ ପୂର୍ବପୁରୁଷ ଦେଖିଥିଲେ ଯେ, ଆମେ ଯଦି ଏ କଳକାରଖାନାର ଜଞ୍ଜାଳରେ ପଡ଼ିବୁ ତେବେ ଗୋଲାମ ହୋଇଯିବୁ ଓ ଆମର ନୈତିକତା ହରାଇ ବସିବୁ । ସେମାନେ ଭାବିଚିନ୍ତି କରି କହିଥିଲେ ଯେ, ଆମର ହାତଗୋଡ଼ ଦ୍ୱାରା ଯେତିକି କାମ ହୋଇ ପାରିବ, ସେତିକି କରିବା ଉଚିତ । ହାତ ଗୋଡ଼କୁ ଖଟାଇ କାର୍ଯ୍ୟ କରିବାରେ ହିଁ ପ୍ରକୃତ ସୁଖ ଓ ସ୍ୱାସ୍ଥ୍ୟ ନିହିତ । ସେମାନେ ଭାବିଲେ ଯେ ବଡ଼ ବଡ଼ ସହର ବସାଇବା ଗୋଟାଏ ବୃଥା ଜଞ୍ଜାଳ । ସେଥିରେ ମଣିଷ ସୁଖୀ ହେବେ ନାହିଁ । ସେଥିରୁ ଦଳ ଦଳ ଚୋର ଡକାୟତ ଓ ବେଶ୍ୟା ସୃଷ୍ଟି ହେବେ ; ପାପାଚାର ବଢ଼ିବ ଏବଂ ଗରିବ ଲୋକଙ୍କୁ ଧନୀ ଲୋକେ ଲୁଣ୍ଠନ କରିବେ । ସେଥିପାଇଁ

ସେମାନେ ଶ୍ରେଷ୍ଠ ଶ୍ରେଷ୍ଠ ଗାଁରେ ହିଁ ସନ୍ତୁଷ୍ଟ ରହୁଥିଲେ । ଲୋକେ ନୈତିକତା ଆଗରେ ରାଜାମାନଙ୍କୁ ଓ ସେମାନଙ୍କର କ୍ଷମତାକୁ ତୁଚ୍ଛ ଓ ହୀନ ମନେ କରୁଥିଲେ ଏବଂ ସେହି ହେତୁରୁ ମୁନି, ଋଷି ଓ ଫକୀରମାନଙ୍କୁ ଅପେକ୍ଷା ସମ୍ରାଟ୍‌ମାନଙ୍କୁ ଊଣା ମର୍ଯ୍ୟାଦା ଦେଉଥିଲେ । ଯେଉଁ ରାଷ୍ଟ୍ର ଏପରି ଗଢ଼ା, ସେ ରାଷ୍ଟ୍ର ଅନ୍ୟଠାରୁ ଶିକ୍ଷା ପାଇବା ପରିବର୍ତ୍ତେ ଅନ୍ୟକୁ ଶିକ୍ଷା ଦେବାକୁ ଅଧିକ ଯୋଗ୍ୟ ଅଟେ । ଏ ଦେଶରେ ମଧ୍ୟ କଚେରୀ, ଓକିଲ, ଡାକ୍ତର ଥିଲେ । କିନ୍ତୁ ସେ ସବୁ ନିଜ ସୀମା ମଧ୍ୟରେ ନିୟମ ଅନୁସାରେ ଚଳୁଥିଲେ । ସମସ୍ତେ ଜାଣିଥିଲେ ଯେ, ଏ ଧନ୍ଦାଗୁଡ଼ାକ ଖାସ୍ କରି ଉଚ୍ଚ ସ୍ତରର ଧନ୍ଦା ନୁହେଁ । ପୁଣି ଏହି ଓକିଲ, ବୈଦ୍ୟ ଆଦି ଲୋକଙ୍କୁ ଲୁଟୁ ନ ଥିଲେ । ସେମାନେ ଲୋକଙ୍କ ଆଶ୍ରିତ ବୋଲି ସମସ୍ତେ ବିଚାରୁଥିଲେ । ସେମାନେ ଲୋକଙ୍କର ହାକିମ ବୋଲି ଗଣ୍ୟ ହେଉ ନ ଥିଲେ । କଚେରୀକୁ ନ ଯିବାଟା ଥିଲା ସମସ୍ତଙ୍କ ଧ୍ୟେୟ । ଲୋକଙ୍କୁ ଫାନ୍ଦରେ ପକାଇବା ପାଇଁ ସେତେବେଳେ ସ୍ୱାର୍ଥପର ଟାଉଟରେ ନ ଥିଲେ । ଏହି ବିକୃତି କେବଳ ରାଜଧାନୀରେ ଓ ରାଜଧାନୀର ଆଖପାଖରେ ଘଟୁଥିଲା । ସେ ଯୁଗରେ ଲୋକ-ସାଧାରଣଙ୍କୁ ଏକ ପ୍ରକାର ନ୍ୟାୟ ବିଚାର ମିଳୁଥିଲା । ସାଧାରଣ ପ୍ରଜା ଏହି ବିକୃତ ସଭ୍ୟତାରୁ ମୁକ୍ତଥାଇ ଓ ଆତ୍ମନିର୍ଭର ଭାବରେ ରହି ଗ୍ରାମବାସ କରି ଚଳୁଥିଲେ । ସେହିମାନେ ପ୍ରକୃତ ସ୍ୱରାଜ୍ୟ ଉପଭୋଗ କରୁଥିଲେ ।

ଏହି ଅଭିଶପ୍ତ ଆଧୁନିକ ସଭ୍ୟତା ଏ ପର୍ଯ୍ୟନ୍ତ ଭାରତର ଯେଉଁ ଯେଉଁ ଅଞ୍ଚଳରେ ପଶି ପାରି ନାହିଁ, ସେଠାରେ ଭାରତ ସେହି ପୂର୍ବପରି ରହିଛି । ସେହି ସ୍ଥାନଗୁଡ଼ିକରେ ଆପଣ ଏ ନବ୍ୟଭାବ କଥା କହିଲେ, ଲୋକେ ଆପଣଙ୍କୁ ପରିହାସ କରିବେ ।

ସେମାନଙ୍କୁ ଇଂରେଜମାନେ ଶାସନ କରୁନାହାନ୍ତି ଏବଂ ଆପଣ ମଧ୍ୟ ସେମାନଙ୍କ ଶାସନ କରି ପାରିବେ ନାହିଁ । ଯେଉଁମାନଙ୍କ ନାଁରେ ଆମେ କଥାବାର୍ତ୍ତା କରୁଛୁ, ସେମାନଙ୍କୁ ଆମେ ଚିହ୍ନିନାହୁଁ, ସେମାନେ ମଧ୍ୟ ଆମକୁ ଚିହ୍ନିନାହାନ୍ତି । ଆପଣ ଓ ଆପଣଙ୍କ ପରି ଦେଶଭକ୍ତମାନଙ୍କୁ ମୋର ପରାମର୍ଶ ଯେ, ଆପଣମାନେ ଭାରତରେ ଯେଉଁ ଅଞ୍ଚଳକୁ ରେଲ୍‌ଲାଇନ୍ ଯାଇ ନ ଥିବାରୁ ଦୂଷିତ ହୋଇ ନାହିଁ, ସେହି ଆଭ୍ୟନ୍ତରୀଣ ଅଂଚଳକୁ ଯାଇ ଛଅ ମାସ ରହି ଆସନ୍ତୁ । ତେବେଯାଇ ଆପଣ ଦେଶଭକ୍ତ ହୋଇ ପାରିବେ ଏବଂ ସ୍ୱରାଜ୍ୟ କଥା କହିପାରିବେ ।

ପ୍ରକୃତ ସଭ୍ୟତା କହିଲେ ମୁଁ କଅଣ ବୁଝେ, ତାହା ବର୍ତ୍ତମାନ ଆପଣ ଦେଖିଲେ । ଉପରେ ଭାରତର ପ୍ରକୃତ ସଭ୍ୟତାର ଯେଉଁ ଚିତ୍ର ମୁଁ ଦେଲି, ତାକୁ ଯେଉଁମାନେ ବଦଳାଇବାକୁ ଚାହୁଁଛନ୍ତି, ସେମାନେ ଦେଶର ଶତ୍ରୁ ଓ ପାପୀ ଅଟନ୍ତି ।

ପାଠକ—ଆପଣ ଯେଉଁ ପ୍ରକାରେ ବର୍ଣ୍ଣନା କଲେ, ଭାରତବର୍ଷ ସେହିପରି ହୋଇଥିଲେ ତ ଭଲ ହୁଅନ୍ତା । ମାତ୍ର ଏ ମଧ୍ୟ ସେହି ଦେଶ, ଯେଉଁ ଦେଶରେ ହଜାର ହଜାର ବାଳୁତ ବିଧବା ରହିଛନ୍ତି, ଯେଉଁ ଦେଶରେ ଦୁଇବର୍ଷର ଶିଶୁକୁ ବିଭା କରିଦିଅନ୍ତି, ଯେଉଁଠି ବାରବର୍ଷ ବୟସର ଝିଅ ସନ୍ତାନର ମାତା ହୁଏ ଓ ଘରକରଣା କରେ; ଯେଉଁ ଦେଶରେ ଜଣେ ସ୍ତ୍ରୀ ଏକାଧିକ ପୁରୁଷକୁ ବିବାହ କରେ, ଯେଉଁ ଦେଶରେ "ନିୟୋଗ" ପ୍ରଥା ଚଳେ, ଯେଉଁ ଦେଶରେ ଧର୍ମ ନାମରେ ନାରୀ ବେଶ୍ୟାବୃତ୍ତି ପାଇଁ ନିଜକୁ ସମର୍ପଣ କରିଦିଏ ଏବଂ ଯେଉଁ ଦେଶରେ ଧର୍ମ ନାମରେ ଛେଳି-ମେଣ୍ଢାକୁ ବଳି ଦିଆଯାଏ ଏଗୁଡ଼ାକ ମଧ୍ୟ ସଭ୍ୟତାର ଲକ୍ଷଣ ବୋଲି ଆପଣ ବିଚାରୁଛନ୍ତି କି ?

ସମ୍ପାଦକ—ଆପଣ ଗୋଟିଏ ଭୁଲ୍ କରୁଛନ୍ତି । ଆପଣ ଯେଉଁ ଦୋଷଗୁଡ଼ାକ କହିଲେ, ସେଗୁଡ଼ାକ ତ ନିଶ୍ଚିତରୂପେ ଦୋଷ। ସେଗୁଡ଼ାକୁ କେହି ପ୍ରାଚୀନ ସଭ୍ୟତା କହେ ନାହିଁ । ପ୍ରାଚୀନ (ଗୌରବମୟ) ସଭ୍ୟତା ସହିତ ସେ ଦୋଷଗୁଡ଼ାକ ମଧ୍ୟ ରହିଛି । ସେଗୁଡ଼ାକ ଦୂର କରିବା ପାଇଁ ସବୁବେଳେ ଉଦ୍ୟମ କରାଯାଇଛି ଓ ଏ ଉଦ୍ୟମ ବରାବର ଚାଲିଥିବ । ଆମ ମଧ୍ୟରେ ଯେଉଁ ନୂଆ ସ୍ଫୂର୍ତ୍ତି ଦେଖାଦେଇଛି, ସେହି ତେଜସ୍ୱୀତାକୁ ଏ ଦୋଷଗୁଡ଼ିକ ଦୂର କରିବା ପାଇଁ ଆମେ ବିନିଯୋଗ କରିପାରୁଁ । ମୁଁ ଆପଣଙ୍କୁ ଆଧୁନିକ ସଭ୍ୟତାର ଯେଉଁ ଲକ୍ଷଣଗୁଡ଼ିକ କହିଲି, ତାହା ଏ ସଭ୍ୟତାର ସ୍ତାବକମାନେ ନିଜ ମୁହଁରେ ମାନୁଛନ୍ତି । ପୁଣି ମୁଁ ଭାରତୀୟ ସଭ୍ୟତାର ଯେଉଁ ବର୍ଣ୍ଣନା ଦେଲି, ତାହା ସେହି ସଭ୍ୟତାର ସ୍ତାବକମାନେ ହିଁ ବର୍ଣ୍ଣନା କରିଛନ୍ତି । ପୃଥିବୀର କୌଣସି ଦେଶର ଲୋକେ କୌଣସି ସଭ୍ୟତା ଭିତରେ ଥାଇ ପରିପୂର୍ଣ୍ଣତା ଅର୍ଜନ କରିପାରି ନାହାନ୍ତି । ଭାରତୀୟ ସଭ୍ୟତାର ଅଭିମୁଖ୍ୟ ହେଉଛି, ନୈତିକତାକୁ ବଢ଼ାଇବା ଏବଂ ପକ୍ଷାନ୍ତରେ, ପାଶ୍ଚାତ୍ୟ ସଭ୍ୟତାର ଗତି ହେଉଛି ଅନୈତିକତା ବା ପାପାଚାରକୁ ପ୍ରସାର କରିବା । ସେଥିପାଇଁ ମୁଁ ତାକୁ ବିକୃତ କହୁଛି । ପାଶ୍ଚାତ୍ୟ ସଭ୍ୟତା ନିରୀଶ୍ୱରବାଦୀ ହୋଇଥିବା ସ୍ଥଳେ ଭାରତୀୟ ସଭ୍ୟତା ଈଶ୍ୱର-ବିଶ୍ୱାସୀ । ଏ କଥା ବୁଝି ଓ ଏଥିରେ ବିଶ୍ୱାସ ରଖି, ଶିଶୁ ଯେପରି ମାଆର ଛାତିକୁ ଜାବୁଡ଼ି ଧରିଥାଏ; ସେହିପରି ପ୍ରତ୍ୟେକ ଭାରତବାସୀ ପ୍ରାଚୀନ ଭାରତୀୟ ସଭ୍ୟତାକୁ ଧରିରଖିବା ଉଚିତ୍ ।

# ଭାରତ କପରି ସ୍ୱାଧୀନ ହୋଇପାରିବ ?

ପାଠକ—ସଭ୍ୟତା ସଂକ୍ରାନ୍ତରେ ଆପଣଙ୍କ ବିଚାରକୁ ମୁଁ ପସନ୍ଦ କରୁଛି । ଆପଣ ଯାହା କହିଲେ, ସେ ବିଷୟରେ ମୋତେ ଚିନ୍ତା କରିବାକୁ ପଡ଼ିବ । ଆପଣଙ୍କର ସବୁ କଥାକୁ ମୁଁ ତୁରନ୍ତ ଗ୍ରହଣ କରି ନେବାକୁ ଚାହେଁ ନାହିଁ । ଆପଣଙ୍କର ଏ ପ୍ରକାର ବିଚାର ଅନୁସାରେ ଭାରତବର୍ଷକୁ ସ୍ୱାଧୀନ କରିବା ପାଇଁ ଆପଣ କେଉଁ ଉପାୟ ବତେଇବେ ?

ସମ୍ପାଦକ—ମୋର ବିଚାରକୁ ସମସ୍ତେ ସଙ୍ଗେ ସଙ୍ଗେ ମାନିଯିବେ ବୋଲି ମୁଁ ଆଶା କରେ ନାହିଁ । କେବଳ ଆପଣଙ୍କ ପରି ଯେଉଁମାନେ ମୋ' ବିଚାର ଜାଣିବାକୁ ଚାହାନ୍ତି, ସେମାନଙ୍କ ଆଗରେ ମୋ' ବିଚାର ଥୋଇଦେବା ହିଁ ମୋର କର୍ତ୍ତବ୍ୟ । ସେ ବିଚାର ସେମାନଙ୍କର ପସନ୍ଦ ହେବ କି ନାହିଁ, ତାହା କାଳକ୍ରମେ ଜଣା-ପଡ଼ିବ । ଭାରତବର୍ଷକୁ ସ୍ୱାଧୀନ କରିବାର ସର୍ତ୍ତଗୁଡ଼ିକ ଆମେ ଆଲୋଚନା କରି ସାରିଛୁ, ମାତ୍ର ତାହା ଆମେ ପରୋକ୍ଷ ଭାବରେ କରିଛୁ । ବର୍ତ୍ତମାନ ଆମେ ସେଗୁଡ଼ିକୁ ପ୍ରତ୍ୟକ୍ଷରୂପେ ବିଚାର କରିବା । ଯେଉଁ କାରଣରୁ ଲୋକ ବେମାର ହୋଇଥାଏ, ସେହି କାରଣ ଦୂର କରିଦେଲେ, ରୋଗୀ ଭଲ ହୋଇଯାଏ, ଏହା ଜଣାଶୁଣା କଥା । ସେହିପରି ଯେଉଁ କାରଣରୁ ଭାରତ ପରାଧୀନ

ହେଲ, ସେହି କାରଣଗୁଡ଼ିକ ଦୂର କରିଦେଲେ, ସେ ବନ୍ଧନରୁ ମୁକ୍ତ ହୋଇଯିବ ।

ପାଠକ—ଆପଣଙ୍କ ଉତ୍ତର ଅନୁସାରେ ଭାରତୀୟ ସଭ୍ୟତାହିଁ ଯଦି ସବୁଠାରୁ ଭଲ, ତେବେ ଭାରତ ପରାଧୀନ ହେଲା କାହିଁକି ?

ସମ୍ପାଦକ—ଏ ସଭ୍ୟତା ଯେ ସବୁଠାରୁ ଭଲ ତାହା ଅବିସମ୍ବାଦୀରୂପେ ସତ୍ୟ, ମାତ୍ର ସବୁ ସଭ୍ୟତା ପରୀକ୍ଷାରେ ପଡ଼େ, ଏହା ଦେଖାଯାଇଛି । ଯେଉଁ ସଭ୍ୟତା ସ୍ଥାୟୀ, ସେ ସଭ୍ୟତା ଏ ପରୀକ୍ଷାରୁ ଉତ୍ତୀର୍ଣ୍ଣ ହୋଇଯାଏ । ଭାରତମାତାର ସନ୍ତାନମାନଙ୍କର କିଛି ତ୍ରୁଟି ଥିଲା ବୋଲି ଏହାର ସଭ୍ୟତା ବିପଦରେ ପଡ଼ିଛି । କିନ୍ତୁ ଏ ବିପତ୍ତିରୁ ଉଦ୍ଧାର ଯିବାରେ ତାହାର ଶକ୍ତି ଜଣାପଡ଼ିବ । ପୁଣି ସମୁଦାୟ ଭାରତବର୍ଷକୁ ଏହା ସ୍ପର୍ଶ କରିନାହିଁ । ଯେଉଁମାନେ ପାଶ୍ଚାତ୍ୟ ସଭ୍ୟତା ଦ୍ୱାରା ଆକ୍ରାନ୍ତ ହୋଇଛନ୍ତି, ସେହିମାନେ ପରାଧୀନତାର ଫାସରେ ଆବଦ୍ଧ ହୋଇଛନ୍ତି । ଏ ପୃଥିବୀକୁ ଆମେ ଆମର ନିକୃଷ୍ଟ ମାପକାଠିରେ ମାପୁଁ । ଆମେ ଗୋଲାମ ହୋଇ ଥିବାରୁ ଆମେ ସମୁଦାୟ ପୃଥିବୀକୁ ଗୋଲାମ ମଣୁଅଛୁଁ । ଆମେ ଦୟନୀୟ ଦଶାରେ ଥିବାରୁ ଆମେ ଭାବୁଅଛୁଁ ଯେ, ସମୁଦାୟ ଭାରତବର୍ଷ ସେହି ଅବସ୍ଥାରେ ରହିଛି । ମାତ୍ର ପ୍ରକୃତରେ ତାହା ନୁହେଁ । ତଥାପି ସମୁଦାୟ ଦେଶ ପ୍ରତି ସେହି ଦୟନୀୟ ଅବସ୍ଥା ଆରୋପ କରିବା ଭଲ । ମାତ୍ର ଉପର୍ଯ୍ୟୁକ୍ତ କଥାଗୁଡ଼ିକ ଯଦି ଆମେ ମନେ ରଖିବା, ତେବେ ଆମେ ଦେଖିପାରିବୁଁ ଯେ, ଆମ ନିଜ ଗୋଲାମୀ ଲୋପ ପାଇଗଲେ, ଭାରତବର୍ଷର ଗୋଲାମୀ ମଧ୍ୟ ଦୂର ହୋଇଯିବ । ଏ ଉତ୍ତରରୁ ଆପଣ ସ୍ୱରାଜ୍ୟର ବ୍ୟାଖ୍ୟା ମଧ୍ୟ ପାଇଯିବେ । ଆମେ ନିଜେ ନିଜକୁ ଶାସନ କରିବା ହିଁ ସ୍ୱରାଜ୍ୟ ଓ ତେଣୁକରି ସ୍ୱରାଜ୍ୟ ଆମ ହାତତଳେରେ ଥୁଆହୋଇଛି । ଏ ସ୍ୱରାଜ୍ୟକୁ

ଆପଣ ସ୍ୱପ୍ନ ଭଳି ମନେକରନ୍ତୁ ନାହିଁ । ମୁଁ ଯେଉଁ ସ୍ୱରାଜ୍ୟର ଚିତ୍ର ଦେବାକୁ ଯାଉଛି, ସେ ସ୍ୱରାଜ୍ୟ ଏପରି ଯେ, ଯଦି ଆମେ ତାହାର ସ୍ୱାଦ ଥରେ ଚାଖିବୁ, ତେବେ ଅନ୍ୟମାନଙ୍କୁ ସେ ସ୍ୱାଦ ଚଖାଇବା ପାଇଁ ଆମ୍ଭେମାନେ ଜୀବନସାରା ଉଦ୍ୟମ କରିବୁ । ମାତ୍ର ପ୍ରତ୍ୟେକ ଲୋକଙ୍କୁ ସେ ସ୍ୱରାଜ୍ୟର ଅନୁଭୂତି ଲାଭ କରିବାକୁ ହେବ । ଜଣେ ବୁଡ଼ିଯାଉଥିବା ଲୋକ ଅନ୍ୟକୁ ଉଦ୍ଧାର କରିପାରେ ନାହିଁ । ପହଁରି ଜାଣିଥିବା ଲୋକ ହିଁ ଅନ୍ୟକୁ ତାରିପାରେ । ଆମେ ନିଜେ ଗୋଲାମ ଅଛୁଁ, ତେଣୁ ଅନ୍ୟମାନଙ୍କୁ ସ୍ୱାଧୀନ କରିବାର କଥା କହିଲେ, ତାହା କେବଳ ଛଳନା ହେବ । ବର୍ତ୍ତମାନ ଆପଣ ବୁଝି ଯିବେଣି ଯେ, ଇଂରେଜଙ୍କୁ ଭାରତବର୍ଷରୁ ତଡ଼ିଦେବା ଆମର ଲକ୍ଷ୍ୟ ହେବା କିଛି ଅତ୍ୟାବଶ୍ୟକ ନୁହେଁ । ଇଂରେଜମାନେ ଯଦି ଭାରତୀୟ ହୋଇ ରହିବେ, ତେବେ ଆମେ ସେମାନଙ୍କୁ ଚଳେଇ ନେବୁ । ଯଦି ଇଂରେଜମାନେ ସେମାନଙ୍କ ସଭ୍ୟତାକୁ ସାଥିରେ ନେଇ ଏଠାରେ ରହିବାକୁ ଚାହିଁବେ, ତେବେ ସେମାନଙ୍କର ଭାରତବର୍ଷରେ ସ୍ଥାନ ନାହିଁ । ଏପରି ପରିସ୍ଥିତି ସୃଷ୍ଟି କରିବା ଆମ ଉପରେ ନିର୍ଭର କରେ ।

ପାଠକ—ଇଂରେଜମାନେ ଭାରତୀୟ ପାଲଟି ଯିବା ଅସମ୍ଭବ କଥା ।

ସମ୍ପାଦକ– ଆମେ ଏପରି କହିବା, ଇଂରେଜମାନଙ୍କ ମଧ୍ୟରେ ମନୁଷ୍ୟତା ନାହିଁ କହିବା ସଙ୍ଗେ ସମାନ । ସେମାନେ ଭାରତୀୟ ହେବେ କି ନାହିଁ, ତାହା ଆମର ଆଲୋଚନାର ବହିର୍ଭୂତ ବିଷୟ । ଯଦି ଆମେ ଆମର ଘରକୁ ଶୃଙ୍ଖଳିତ କରିବୁ, ତେବେ ଯେଉଁମାନେ ସେ ଘରେ ରହିବାକୁ ଉପଯୁକ୍ତ ହେବେ, ସେହିମାନେ

ହିଁ ରହିବେ । ବାକି ସମସ୍ତେ ଘର ଛାଡ଼ି ଆପେ ଆପେ ଚାଲିଯିବେ । ଏ ପ୍ରକାର ଅନୁଭବ ଆମ ସମସ୍ତଙ୍କର ଅଛି ।

ପାଠକ -- ଇତିହାସରେ ଏପରି ଘଟଣା ଘଟିନାହିଁ ।

ସଂପାଦକ -- ଇତିହାସରେ ଯାହା ଘଟିନାହିଁ, ତାହା ଘଟିବ ନାହିଁ ବୋଲି ଭାବିବା ହେଉଛି ମନୁଷ୍ୟର ମର୍ଯ୍ୟାଦାକୁ ଅବିଶ୍ୱାସ କରିବା । ଆମ ବୁଦ୍ଧିକୁ ଯାହା ଦିଶୁଛି, ତାହା ପାଇଁ ଯତ୍ନ କରିବା ଆମର କର୍ତ୍ତବ୍ୟ ଅଟେ । ସବୁ ଦେଶର ପରିସ୍ଥିତି ଓ ଅନ୍ୟଠାରୁ ନିଆରା । ଭାରତର ଶକ୍ତି ଅପରିମେୟ । ସେଥିପାଇଁ ଅନ୍ୟାନ୍ୟ ଦେଶର ଇତିହାସର ନଜିର ଦେବା ଅନାବଶ୍ୟକ । ମୁଁ ଆପଣଙ୍କୁ କହୁଛି ଯେ ଅନ୍ୟ (ଦେଶର) ସଭ୍ୟତା ଯେତେବେଳେ ହାରି ମାନିଛି, ସେତେବେଳେ ଭାରତୀୟ ସଭ୍ୟତା ବହୁ ଘାତପ୍ରତିଘାତରୁ ଉଦ୍ଧାର ପାଇଛି ।

ପାଠକ -- ମୁଁ ଏହା ବୁଝିପାରୁ ନାହିଁ । ଆମକୁ ଯେ ଯୁଦ୍ଧକରି ଇଂରେଜଙ୍କୁ ତଡ଼ିବାକୁ ପଡ଼ିବ, ଏଥିରେ କୌଣସି ସନ୍ଦେହ ନାହିଁ । ସେମାନେ ଆମ ଦେଶରେ ଥିବା ପର୍ଯ୍ୟନ୍ତ ଆମର ଆଦୌ ସ୍ୱସ୍ତି ନାହିଁ । ପରାଧୀନ ଲୋକେ ସ୍ୱପ୍ନରେ ସୁଦ୍ଧା ସୁଖର କଳ୍ପନା କରିପାରନ୍ତି ନାହିଁ ବୋଲି ଆମର ଜଣେ କବି କହିଛନ୍ତି । ଇଂରେଜମାନେ ଏ ଦେଶରେ ଅଛନ୍ତି ବୋଲି ଆମେ ଦୁର୍ବଳ ହୋଇଯାଉଛୁ । ଆମ ତେଜ ବା ମହାନତା ଲୁପ୍ତ ହୋଇଗଲାଣି ଓ ଆମ ଲୋକେ ଆତଙ୍କିତ ହୋଇଗଲା ପରି ଜଣାପଡ଼ୁଛନ୍ତି । ଇଂରେଜମାନେ ଏ ଦେଶର ଯମ ପରି, ଓ ସେହି ଯମକୁ ଯେ କୌଣସି ଉପାୟରେ ଏଠାରୁ ତଡ଼ିବାକୁ ପଡ଼ିବ ।

ସଂପାଦକ -- ଆପଣ ଉତ୍ତେଜିତ ହୋଇ ପଡ଼ିଥିବାରୁ ମୁଁ ଯାହା କହିଥିଲି, ସବୁ ପାଶୋରି ପକେଇଲେ । ଆମେ ଇଂରେଜଙ୍କୁ ଏ

ଦେଶକୁ ଆଣିଛୁଁ ଏବଂ ଆମେ ହିଁ ସେମାନଙ୍କୁ ଏ ଦେଶରେ ରଖିଛୁଁ । ଆପଣ ଏ କଥାଟା କପରି ଭୁଲି ଯାଉଛନ୍ତି ଯେ, ଆମେ ସେମାନଙ୍କର ସଭ୍ୟତାକୁ ଗ୍ରହଣ କରିଛୁଁ ବୋଲି ସେମାନେ ଏଠାରେ ରହିପାରୁଛନ୍ତି ? ଆପଣ ସେମାନଙ୍କୁ ଘୃଣା ନ କରି, ସେମାନଙ୍କର ସଭ୍ୟତାକୁ ହିଁ ଘୃଣା କରିବା ଉଚିତ । ଆଚ୍ଛା, ମନେ କରନ୍ତୁ ଯେ ଅମେ ଯୁଦ୍ଧ କରି ସେମାନଙ୍କୁ ତଡ଼ିବାକୁ ଚାହୁଁ । ତାହା ହେବ କପରି ?

ପାଠକ—ଇଟାଲି ଯେପରି କଲା ଏବଂ ମ୍ୟାଜନି ଓ ଗ୍ୟାରିବାଲ୍‌ଡି ଯାହା କଲେ, ଆମେ ମଧ୍ୟ ତାହା କରି ପାରିବୁଁ । ମ୍ୟାଜନି ଓ ଗ୍ୟାରିଲ୍‌ବାଡ଼ି ଯେ ମହାବୀର, ଏ କଥା ଆପଣ ଅସ୍ୱୀକାର କରିପାରିବେ ନାହିଁ ।

# ଇଟାଲୀ ଓ ଭାରତବର୍ଷ

ସମ୍ପାଦକ—ଆପଣ ଯେ ଇଟାଲୀର ଉଦାହରଣ ଦେଲେ, ଭଲ ହେଲା । ମ୍ୟାଜିନି ମହାତ୍ମା ଥିଲେ । ଗ୍ୟାରିବାଲ୍‌ଡ଼ି ଜଣେ ବଡ଼ ଯୋଦ୍ଧା ଥିଲେ । ଉଭୟେ ପ୍ରଶଂସାର୍ହ । ଦୁହିଁଙ୍କଠାରୁ ଆମେ ବହୁତ କଥା ଶିଖି ପାରିବା । ମାତ୍ର ଇଟାଲି ଓ ଭାରତର ପରିସ୍ଥିତି ମଧ୍ୟରେ ପାର୍ଥକ୍ୟ ଅଛି ।

ମ୍ୟାଜିନି ଓ ଗ୍ୟାରିବାଲ୍‌ଡ଼ିଙ୍କ ମଧ୍ୟରେ ଯେଉଁ ପାର୍ଥକ୍ୟ ଥିଲା, ତାହା ପ୍ରଥମେ ଲକ୍ଷ୍ୟ କରିବାର କଥା । ଇଟାଲି ସମ୍ବନ୍ଧରେ ମ୍ୟାଜିନିଙ୍କର ମହାନ୍ ଆକାଂକ୍ଷା ପୂର୍ଣ୍ଣ ହୋଇ ନ ଥିଲା ଏବଂ ଏପର୍ଯ୍ୟନ୍ତ ହୋଇନାହିଁ । ମଣିଷ-ଜାତିର କର୍ତ୍ତବ୍ୟ ସମ୍ବନ୍ଧରେ ଲେଖିବାକୁ ଯାଇ ମ୍ୟାଜିନି ଲେଖିଛନ୍ତି ଯେ ନିଜକୁ ନିଜର ଶାସନ କରିବାକୁ ହେବ, ତାହା ପ୍ରତ୍ୟେକ ଲୋକର ଜାଣିବା ଉଚିତ । ଇଟାଲିରେ ତାହା ହେଲା ନାହିଁ । ଗ୍ୟାରିବାଲ୍‌ଡ଼ି ମ୍ୟାଜିନିଙ୍କର ଏହି ବିଷୟର ସହିତ ଏକମତ ନ ଥିଲେ । ଗ୍ୟାରିବାଲ୍‌ଡ଼ି ଓ ମ୍ୟାଜିନିଙ୍କ ମଧ୍ୟରେ ମତଭେଦ ଆମର ମନେ ରଖିବା ଉଚିତ । ଗ୍ୟାରିବାଲ୍‌ଡ଼ି ପ୍ରତ୍ୟେକ ଇଟାଲିବାସୀ ହାତରେ ଅସ୍ତ୍ରଶସ୍ତ୍ର ଦେଲେ ଏବଂ ପ୍ରତ୍ୟେକ ଇଟାଲିବାସୀ ତାହା ଧାରଣ କଲେ ।

ଇଟାଲି ଓ ଅଷ୍ଟ୍ରିଆର ସଭ୍ୟତା ମଧ୍ୟରେ ପାର୍ଥକ୍ୟ ନ ଥିଲା । ସେ ସମ୍ପର୍କରେ ସେମାନେ ଜ୍ଞାତି ଭିତରେ ଭାଇ ଭଳି ଥିଲେ । ଇଟାଲି 'ଯେଷାକୁ ତେଷା' ନୀତି ଧରିଥିଲା । ଗ୍ୟାରିବାଲ୍‌ଡ଼ି

କେବଳ ଅଷ୍ଟ୍ରିଆର ପ୍ରଭୁତ୍ୱରୁ ଇଟାଲିକୁ ମୁକ୍ତ କରିବାକୁ ଚାହୁଁ-ଥିଲେ । ସେଥିପାଇଁ ସେ ମନ୍ତ୍ରୀ କାଭୁରଙ୍କ ଜରିଆରେ ଯେଉଁ ଷଡ଼ଯନ୍ତ୍ର କଲେ, ତାହା ଇଟାଲିର ଇତିହାସକୁ କଳଙ୍କିତ କରି-ଦେଲା । ଶେଷ ପରିଣତି କଅଣ ହେଲା ? ଇଟାଲିର ବାସିନ୍ଦା ଶାସନ କରୁଛନ୍ତି ବୋଲି ଇଟାଲିର ପ୍ରଜା ସୁଖୀ, ଏକଥା ଯଦି ଆପଣ ବିଶ୍ୱାସ କରୁଥିବେ, ତେବେ ଆପଣ ଅନ୍ଧାରରେ ଅଣ୍ଡାଳି ହେଉଛନ୍ତି । ମ୍ୟାଜିନି ସ୍ପଷ୍ଟଭାଷାରେ କହି ଦେଇଛନ୍ତି ଯେ ଇଟାଲି ସ୍ୱାଧୀନ ହୋଇ ନାହିଁ । ଭିକ୍ଟର ଇମାନୁଏଲ ଏ କଥାର ଗୋଟିଏ ପ୍ରକାରର ଅର୍ଥ କରିଛନ୍ତି ଓ ମ୍ୟାଜିନି ଅନ୍ୟ ପ୍ରକାରର ଅର୍ଥ କରିଛନ୍ତି । ଇମାନୁଏଲ୍, କାଭୁର ଓ ଏପରିକି ଗ୍ୟାରିବାଲ୍ଡିଙ୍କ ମତରେ, ଇଟାଲି ବୋଇଲେ ଇଟାଲିର ରାଜା ଇମାନୁଏଲ ଓ ତାଙ୍କ ପାଖ ଲୋକେ । ମ୍ୟାଜିନିଙ୍କ ବିଚାର ଅନୁସାରେ ଇଟାଲିର ଅର୍ଥ ହେଲା ଇଟାଲୀର ସମସ୍ତ ଅଧିବାସୀ, ଇଟାଲିର ଚାଷୀକୁଳ । ଇମାନୁଏଲ ସେଠି ପ୍ରଜାଙ୍କର ଚାକର ମାତ୍ର । ମ୍ୟାଜିନିଙ୍କର କଳ୍ପ-ନାର ଇଟାଲି ଏ ପର୍ଯ୍ୟନ୍ତ ଗୋଲାମ ହୋଇ ରହିଛି । ତଥାକଥିତ ସ୍ୱାଧୀନତା ଯୁଦ୍ଧରେ ଇଟାଲୀର ପ୍ରଜାମାନେ ଦୁଇ ରାଜାଙ୍କ ମଧ୍ୟରେ (ଚେସ ଖେଳରେ ବୋଡ଼ିଆ ପରି) ବ୍ୟବହୃତ ହୋଇଥିଲେ । ଇଟାଲୀର ଶ୍ରମିକକୁଳ ବର୍ତ୍ତମାନ ମଧ୍ୟ ଦୁଃଖୀ । ସେମାନଙ୍କ ଆପତ୍ତି ଅଭିଯୋଗ କେହି ଶୁଣୁ ନାହାନ୍ତି । ସେଥିପାଇଁ ସେମାନେ ନରହତ୍ୟା କରୁଛନ୍ତି, ବିଦ୍ରୋହରେ ଉଠୁଛନ୍ତି ଏବଂ ସେଠାରେ ବିଦ୍ରୋହ ହେବାର ଆଶଙ୍କା ସର୍ବଦା ରହିଛି । ଅଷ୍ଟ୍ରିଆର ସୈନ୍ୟ ଚାଲିଯିବା ପରେ ଇଟାଲିର କି ଆଖିଦୃଷ୍ଟିଆ ଲାଭ ହେଲା । ଲାଭ ନାମକୁ ମାତ୍ର ହୋଇଛି । ଯେଉଁ ଶାସନ-ସଂସ୍କାର ପାଇଁ ଯୁଦ୍ଧ ଲାଗିଥିଲା, ତାହା ଏପର୍ଯ୍ୟନ୍ତ ହେଲା ନାହିଁ । ପ୍ରଜାଙ୍କ ଦଶା ସୁଧୁରିଲା ନାହିଁ ।

ଭାରତର ଏହିପରି ଦଶା ଘଟୁ, ତାହା ଆପଣ କଦାପି ଇଚ୍ଛା କରୁ ନ ଥିବେ । ମୋର ବିଶ୍ୱାସ, ଭାରତର କୋଟି କୋଟି ଲୋକଙ୍କୁ ସୁଖୀ କରିବା ହିଁ ଆପଣଙ୍କର ଉଦ୍ଦେଶ୍ୟ । ଆପଣ ( ବା ମୁଁ ) ଶାସନ-କ୍ଷମତା ତାହାକୁ ନେବା ଆପଣଙ୍କର ଉଦ୍ଦେଶ୍ୟ ନୁହେଁ । ତାହା ହେଲେ ଆମକୁ ଗୋଟାଏ କଥା ଚିନ୍ତା କରିବାକୁ ହେବ । ସେ କଥାଟି ହେଉଛି, ଭାରତର କୋଟି କୋଟି ପ୍ରଜା କିପରି ସ୍ୱାଧୀନ ହେବେ । ଗଡ଼ଜାତ ରାଜାମାନଙ୍କ ଶାସନରେ ପ୍ରଜା-ମାନେ ଯେ ନିଷ୍ପିଷ୍ଟ ହେଉଛନ୍ତି, ତାହା ଆପଣ ସ୍ୱୀକାର କରିବେ । ରାଜାମାନେ ନିର୍ଦ୍ଦୟଭାବରେ ପ୍ରଜାଙ୍କ ଉପରେ ଅତ୍ୟାଚାର କରୁଛନ୍ତି । ସେ ଅତ୍ୟାଚାର ଇଂରେଜମାନଙ୍କର ଅତ୍ୟାଚାରଠାରୁ ଅଧିକ । ଆପଣ ଯଦି ଭାରତବର୍ଷରେ ସେହିପରି ଅତ୍ୟାଚାର ଚାହୁଁଥିବେ, ତେବେ ଆମେ ଦୁହେଁ କେବେହେଁ ଏକମତ ହୋଇପାରିବା ନାହିଁ । ମୋର ସ୍ୱଦେଶପ୍ରୀତି ମୋତେ କେବେହେଁ ଏହା ଶିଖାଉ ନାହିଁ ଯେ ଇଂରେଜମାନେ ଚାଲିଯାଆନ୍ତୁ ଏବଂ ଗଡ଼ଜାତରେ ପ୍ରଜାମାନେ ସେଠା ରାଜାଙ୍କଦ୍ୱାରା ଯେପରି ନିଷ୍ପିଷ୍ଟ ହେଉଛନ୍ତି, ଭାରତୀୟ ପ୍ରଜାମାନେ ସେହିପରି ନିଷ୍ପିଷ୍ଟ ହେଉନ୍ତୁ । ମୋର ବଳ ପାଇଲେ ମୁଁ ଇଂରେଜମାନଙ୍କର ଅତ୍ୟାଚାରକୁ ଯେପରି ବିରୋଧ କରନ୍ତି, ସେହିପରି ଗଡ଼ଜାତ ରାଜାଙ୍କ ଅତ୍ୟାଚାର ବିରୋଧରେ ସଂଗ୍ରାମ କରନ୍ତି । ସ୍ୱଦେଶ ପ୍ରୀତି ବୋଇଲେ ମୁଁ ବୁଝେ ଯେ ସମଗ୍ର ଜନତାର ସୁଖ ବା କଲ୍ୟାଣ । ଯଦି ଇଂରେଜମାନଙ୍କ ଦ୍ୱାରା ମୁଁ ଦେଶର ସେହି କଲ୍ୟାଣ କରିପାରିବି, ତେବେ ମୁଁ ସେମାନଙ୍କୁ ମୁଣ୍ଡ ନୁଆଁଇ ନମସ୍କାର କରିବି । ଯଦି କୌଣସି ଇଂରେଜ ଭାରତକୁ ସ୍ୱାଧୀନ କରିବାରେ, ଅତ୍ୟାଚାରର ବିରୋଧ କରିବାରେ ଓ ଏ ଦେଶର ସେବା କରିବାରେ ନିଜର ଜୀବନ

ଉତ୍ସର୍ଗ କରିବେ, ତେବେ ସେହି ଇଂରେଜଙ୍କୁ ମୁଁ ଆନ୍ତରିକ ଭାବେ ସ୍ୱାଗତ କରିବି ।

ପୁଣି ଭାରତବର୍ଷ ଅସ୍ତ୍ରଶସ୍ତ୍ର ପାଇଲେ ସିନା ସେ ଇଟାଲୀ ପରି ଲଢ଼ି ପାରିବ ? ଏ ସମସ୍ୟାଟା ଆପଣ ମୂଳରୁ ଭାବି ନାହାନ୍ତି । ଇଂରେଜମାନେ ଯେ ଅସ୍ତ୍ରଶସ୍ତ୍ରରେ ଉତ୍ତମରୂପେ ସଜ୍ଜିତ ହୋଇ ରହିଛନ୍ତି, ସେଥିକୁ ମୋର ଡର ନାହିଁ । ସେମାନଙ୍କ ବିରୁଦ୍ଧରେ ଅସ୍ତ୍ରଶସ୍ତ୍ର ସାହାଯ୍ୟରେ ଲଢ଼ିବାକୁ ଗଲେ, ଲକ୍ଷ ଲକ୍ଷ ଭାରତବାସୀଙ୍କୁ ଅସ୍ତ୍ରଶସ୍ତ୍ରରେ ପ୍ରସ୍ତୁତ କରିବାକୁ ପଡ଼ିବ । ଏହା ଯଦି କେବେ ସମ୍ଭବ ହୁଏ, ତେବେ ଏହା କରିବାକୁ କେତେ ବର୍ଷ ଲାଗିବ ? ପୁଣି ସମୁଦାୟ ଭାରତବର୍ଷର ଲୋକଙ୍କୁ ସଶସ୍ତ୍ର କରିବାକୁ ହେଲେ, ଭାରତବର୍ଷକୁ ୟୁରୋପ ପରି ଗଢ଼ିବାକୁ ପଡ଼ିବ । ତାହା କଲେ, ଆଜି ଇଉରୋପରେ ଯେଉଁ ଦୟନୀୟ ଅବସ୍ଥା ହୋଇଛି, ଭାରତର ମଧ୍ୟ ସେହି ଦଶା ହେବ । ଅର୍ଥାତ୍ ସଂକ୍ଷେପରେ କହିଲେ, ଭାରତକୁ ଇଉରୋପୀୟ ସଭ୍ୟତା ଗ୍ରହଣ କରିବାକୁ ହେବ । ଯଦି ଏହା ହିଁ କରିବାର କଥା, ତେବେ ଯେଉଁ ଇଂରେଜମାନେ ଏ ସଭ୍ୟତାରେ ପାରଦର୍ଶୀ ଅଛନ୍ତି, ସେମାନେ ଏଠାରେ ରହିଲେ ସବୁଠାରୁ ଭଲ ହେବ । ସେମାନଙ୍କ ସହିତ କଳିଗୋଳ କରି ବେଳେବେଳେ ଆମେ କିଛି ଅଧିକାର ହାସଲ କରୁଥିବା, ଏବଂ ଏହିପରି ଦିନ କାଟୁଥିବା । ମାତ୍ର ବାସ୍ତବରେ ଭାରତବାସୀ କେବେହେଲେ ଅସ୍ତ୍ରଶସ୍ତ୍ର ଧାରଣ କରିବେ ନାହିଁ ଏବଂ ତାହା ଧାରଣ ନ କରିବାହିଁ ଶ୍ରେୟସ୍କର ।

ପାଠକ—ଆପଣ ପ୍ରକୃତ କଥା ବା ତଥ୍ୟକୁ ବଢ଼ାଇ କରି କହୁଛନ୍ତି । ସମସ୍ତେ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ହେବା କିଛି ଦରକାର ନାହିଁ । ଆମେ ପ୍ରଥମେ କେତେକ ଇଂରେଜଙ୍କୁ

ହତ୍ୟା କରିବୁଁ ଓ ଆତଙ୍କ ସୃଷ୍ଟି କରିବୁଁ । ତାହା ପରେ ଯେଉଁ ମୁଷ୍ଟିମେୟ ଲୋକଙ୍କ ହାତରେ ଅସ୍ତ୍ରଶସ୍ତ୍ର ଥିବ, ସେମାନେ ପ୍ରକାଶ୍ୟ ଭାବରେ ଯୁଦ୍ଧ କରିବେ । ଏଥିରେ ଆମେ ଅତ୍ତେଇ ଲକ୍ଷ ବା କିଛି ଊଣା ଅଧିକ ଲୋକ ହରାଇପାରୁଁ । ମାତ୍ର ଆମ ଦେଶକୁ ଫେରି ପାଇବୁଁ । ଆମେ "ଗରିଲା ଯୁଦ୍ଧ" କରି ଇଂରେଜଙ୍କୁ ହଟାଇ ଦେବୁଁ ।

ସମ୍ପାଦକ—ଏଥିରୁ ମନେ ହେଉଛି ଯେ ପବିତ୍ର ଭାରତ-ଭୂମିକୁ ଆପଣ ଅପବିତ୍ର କରିଦେବାକୁ ବସିଛନ୍ତି । ନରହତ୍ୟା କରି ଦେଶକୁ ସ୍ୱାଧୀନ କରିବା କଥା ଭାବିଲା ବେଳକୁ ଆପଣଙ୍କ ଦେହ ଥରିଯାଉ ନାହିଁ ? ଆମେ ଯାହା ଚାହୁଁ, ତାହା ହେଉଛି ଆତ୍ମବଳିଦାନ । ଅନ୍ୟମାନଙ୍କୁ ହତ୍ୟା କରିବା ହେଉଛି ଭୀରୁ ଲୋକର ଭାବନା । ହତ୍ୟା କରିବା ଦ୍ୱାରା ଆପଣ କାହାକୁ ସ୍ୱାଧୀନ କରିବେ ? ଭାରତବର୍ଷର କୋଟି କୋଟି ପ୍ରଜା ଏହା ଚାହାନ୍ତି ନାହିଁ । ଯେଉଁମାନେ ଘୃଣ୍ୟ ଆଧୁନିକ ସଭ୍ୟତାର ନିଶାରେ ଉନ୍ମତ୍ତ ହୋଇଯାଇଛନ୍ତି, ସେହିମାନେ ଏ ପ୍ରକାରର ଚିନ୍ତା କରୁଛନ୍ତି । ନରହତ୍ୟା କରି ଯେଉଁମାନେ ଶାସନ କ୍ଷମତାର ଅଧିକାରୀ ହେବେ, ସେମାନେ ପ୍ରଜାଙ୍କୁ କଦାପି ସୁଖୀ କରି ପାରିବେ ନାହିଁ । ଧୀଂଗରା ଯେଉଁ ନରହତ୍ୟା କଲେ, ତଦ୍ଦ୍ୱାରା ଦେଶର ଲାଭ ହୋଇଛି ବୋଲି ଯଦି କେହି ଭାବୁଥିବେ, ତେବେ ତାଙ୍କ ବଡ଼ିର ଭୁଲ । ଧୀଂଗରା ଯେ ଜଣେ ସ୍ୱଦେଶଭକ୍ତ, ସେ କଥା ମୁଁ ମାନୁଛି ମାତ୍ର ତାଙ୍କର ଦେଶପ୍ରେମ ଅନ୍ଧ । ସେ ଭୁଲ ବାଟରେ ନିଜ ଦେହକୁ ବଳିଦେଲେ । ସେହି ପଦ୍ଧତି ଶେଷକୁ ଦେଶ ପକ୍ଷରେ ଦୁଃଖଦାୟକ ହେବ ।

ପାଠକ—କିନ୍ତୁ ଆପଣ ଏତକ ତ ନିଶ୍ଚୟ ସ୍ୱୀକାର କରିବେ ଯେ ଏ ହତ୍ୟା ଫଳରେ ଇଂରେଜମାନେ ଡରି ଯାଇଛନ୍ତି ଏବଂ ଲର୍ଡ଼

ମର୍ଲେ ଯେଉଁ ଶାସନ-ସଂସ୍କାର ଦେଇଛନ୍ତି, ତାହା ଏହି ଭୟହେତୁ ଭାରତକୁ ଦେଇଛନ୍ତି ।

ସଂପାଦକ—ଇଂରେଜ ଜାତି ଭୟାଳୁ ପୁଣି ସାହସୀ ମଧ୍ୟ । ଗୋଳା ବାରୁଦର ବ୍ୟବହାର ଯେ ସେମାନଙ୍କ ଉପରେ ସହଜରେ ପ୍ରଭାବ ପକାଏ, ସେ କଥା ମୁଁ ବିଶ୍ୱାସ କରେ । ଲର୍ଡ଼ ମର୍ଲେ ଯାହା ଦେଲେ, ତାହା ଭୟରେ ଦେଇଥିବା ସମ୍ଭବପର ହୋଇପାରେ । ମାତ୍ର, ଭୟରୁ ଯାହା ମିଳେ; ତାହା କେବଳ ଭୟ ଥିବା ପର୍ଯ୍ୟନ୍ତ ରହିଥାଏ ।

# ପଶୁବଳ

## ଗୋଳା-ବାରୁଦ

ପାଠକ—ଉପୁ ମାଧ୍ୟମରେ ଯାହା ମିଳିଥାଏ, ତାହା ଉପୁ ରହିଥିବା ପର୍ଯ୍ୟନ୍ତ ତିଷ୍ଠିପାରେ, ଏଇଟା ଗୋଟିଏ ନୂଆ ତତ୍ତ୍ୱ । ଯାହା ମିଳିଛି, ତାହା କଣ ଫେରସ୍ତ ହୋଇଯିବ ? ବା ସେଥିରେ ପରିବର୍ତ୍ତନ ହେବ ?

ସମ୍ପାଦକ—ସେପରି ନୁହେଁ । ବିଦ୍ରୋହ ଶେଷ ହେବା ପରେ ଲୋକଙ୍କ ମଧ୍ୟରେ ଶାନ୍ତି ରକ୍ଷା କରିବା ପାଇଁ ୧୮୫୭ ମସିହାର ଘୋଷଣା କରାଯାଇଥିଲା । ଯେତେବେଳେ ଶାନ୍ତି ଆସିଗଲା ଓ ଲୋକେ ସରଳମନା ଦେଖାଗଲେ, ସେତେବେଳେ ସେ ଘୋଷଣାର ପରିଣତିକୁ କମାଇ ଦିଆଗଲା । ( ଅର୍ଥାତ୍ ସେହି ଘୋଷଣା ଅନୁସାରେ ଭାରତବାସୀମାନଙ୍କୁ ପୁରା ସୁଯୋଗ ଦିଆଗଲା ନାହିଁ । ) ଯଦି ମୁଁ ଦଣ୍ଡଭୟରେ ଚୋରି ନ କରିବି, ତେବେ ଦଣ୍ଡର ଭୟ ଚାଲିଗଲା ମାତ୍ରେ ମୋର ଚୋରି କରିବାକୁ ପୁଣି ଇଚ୍ଛା ହେବ ଓ ମୁଁ ଚୋରି କରିବି, ଏହା ସମସ୍ତେ ଜାଣନ୍ତି । ଆମର ଗୋଟିଏ ଧାରଣା ହୋଇ ଯାଇଛି ଯେ ଧମକ୍ ଚମକ୍ ଦେଖାଇ ଲୋକଙ୍କଠାରୁ କାମ କରାଯାଇ ପାରିବ ଏବଂ ସେଥିପାଇଁ ଆମେ ତାହା ବରାବର କରି ଆସିଛୁଁ ।

ପାଠକ—ଆପଣଙ୍କର ଏ ଯୁକ୍ତି ଯେ ଆପଣଙ୍କ କଥା ବିରୋଧରେ ଯାଉଛି, ତାହା ଆପଣ ଜାଣି ପାରୁ ନାହାନ୍ତି କି ?

ଆପଣଙ୍କୁ ସ୍ୱୀକାର କରିବାକୁ ପଡ଼ିବ ଯେ ଇଂରେଜମାନେ ସେମାନଙ୍କ ନିଜ ଦେଶରେ ଯାହା ପାଇଥିଲେ, ତାହା ପଶୁବଳ (ହତ୍ୟା) ଦ୍ୱାରା ପାଇଥିଲେ । ମୁଁ ଜାଣେ ଯେ ସେମାନେ ଯାହା ପାଇଛନ୍ତି, ତାହା ମୂଲ୍ୟହୀନ; ମାତ୍ର ତଦ୍ଦ୍ୱାରା ମୋ ଯୁକ୍ତିରେ ଆଞ୍ଚ ଆସୁ ନାହିଁ । ସେମାନେ ସେହି ମୂଲ୍ୟହୀନ ଜିନିଷ ଚାହିଁଥିଲେ ଓ ତାହା ପାଇଥିଲେ । କି ଉପାୟରେ ତାହା ପାଇଲେ, ସେ ବିଷୟରେ ଆମେ କାହିଁକି ଚିନ୍ତା କରିବା ? ଆମର ଲକ୍ଷ୍ୟ ଯଦି ଭଲ ହୋଇଥିବ, ତେବେ ଆମେ ତାକୁ ଯେ କୌଣସି ଉପାୟରେ, ହାଣକାଟ କରି ହେଉ ପଛକେ, ହାସଲ କରିବାର କଥା । ମୋ ଘରେ ଚୋର ପଶିଲେ, ମୁଁ ଚୋରର ତଡ଼ିବାକୁ କି ସାଧନ (ହିଂସ୍ରକ ବା ଅହିଂସକ ଉପାୟ) ଅବଲମ୍ବନ କରିବି, ସେ କଥା କଅଣ ଚିନ୍ତା କରିବି ? ସେତେବେଳେ ମୋର ଧର୍ମ ହେବ ତାକୁ ଯେ କୌଣସି ପ୍ରକାରେ ଘରୁ ତଡିବା । ଆପଣ ଏତକ ସ୍ୱୀକାର କଲି ପରି ମୋର ମନେ ହେଉଛି ଯେ ସରକାରଙ୍କ ନିକଟରେ ଆବେଦନ-ନିବେଦନ କରି ଆମକୁ ଏବେ କିଛି ମିଳି ନାହିଁ କିମ୍ବା ଭବିଷ୍ୟତରେ ମଧ୍ୟ ମିଳିବ ନାହିଁ । ତାହାହେଲେ ପଶୁବଳ ବା ହିଂସା ପ୍ରୟୋଗ କରି ଆମେ ତାହା ହାସଲ ନ କରିବୁ କାହିଁକି ? ଆମେ ଯାହା ପାଇବାକୁ ଚାହୁଁ, ସେତକ ପାଇବା ପାଇଁ ଯେତେ ଭୟ ସୃଷ୍ଟି କରିବା ଆବଶ୍ୟକ ହେବ, ତାହା କରିବୁ । ଶିଶୁ ଯଦି ନିଆଁରେ ଗୋଡ଼ ପୂରେଇବ, ତେବେ ନିଆଁରୁ ରକ୍ଷା କରିବା ପାଇଁ ତାକୁ ଆକଟ କରିବାଟାକୁ ତ ଆପଣ ଦୋଷ କହିବେ ନାହିଁ । ଯେ କୌଣସି ପ୍ରକାରେ ଆମକୁ ଆମର ଲକ୍ଷ୍ୟ ହାସଲ କରିବାକୁ ହେବ ।

ସମ୍ପାଦକ—ଆପଣଙ୍କର ଯୁକ୍ତି ବଡ଼ ଚମତ୍କାର । ମାତ୍ର ବହୁତ ଲୋକଙ୍କୁ ଏହା ଭ୍ରାନ୍ତ କରୁଛି । ମୁଁ ମଧ୍ୟ ଏ ପ୍ରକାରର ଯୁକ୍ତି ଆଗେ କରୁଥିଲି । କିନ୍ତୁ ବର୍ତ୍ତମାନ ମୋ' ଆଖି ଖୋଲି ଗଲାଣି ଓ ମୁଁ ମୋ' ଭୁଲ ଦେଖିପାରୁଛି । ସେ ଭୁଲ୍‌ଟା ଆପଣଙ୍କୁ ବୁଝାଇବା ପାଇଁ ଚେଷ୍ଟା କରିବି । ଆପଣଙ୍କର ପ୍ରଥମ ଯୁକ୍ତିଟିକୁ ଆଗ ବିଚାର କରିବା । ଆପଣ କହିଲେ, ଇଂରେଜମାନେ ଯେଉଁ ଅଧିକାର ପାଇଛନ୍ତି, ସେ ସବୁ ପଶୁବଳ ଦ୍ୱାରା ବା ହତ୍ୟାଦ୍ୱାରା ପାଇଛନ୍ତି । ତେଣୁ ଆମେ ମଧ୍ୟ ସେଇପରି କରି ଆମର ଇପ୍‌ସିତ ଅଧିକାର ହାସଲ କରିବା ନ୍ୟାଯ୍ୟସଙ୍ଗତ । ଇଂରେଜମାନେ ପଶୁବଳ ପ୍ରୟୋଗ କରିଥିଲେ ଏବଂ ଆମେ ମଧ୍ୟ ତାହା କରିପାରିବା ସମ୍ଭବପର । କିନ୍ତୁ ତଦ୍ରୂପ ପନ୍ଥା ଅବଲମ୍ବନ କରି ସେମାନଙ୍କୁ ଯାହା ମିଳିଥିଲା, ଆମେ ମଧ୍ୟ ଠିକ୍ ତାହା ପାଇବା । କିନ୍ତୁ ଆପଣ ନିଶ୍ଚୟ ସ୍ୱୀକାର କରିବେ ଯେ, ଆମେ ତାହା ଲୋଡ଼ୁନା । ସାଧ୍ୟ ଓ ସାଧନ ମଧ୍ୟରେ, ଲକ୍ଷ୍ୟ ଓ ଲକ୍ଷ୍ୟଲାଭ କରିବାର ଉପାୟ ମଧ୍ୟରେ, କୌଣସି ସମ୍ବନ୍ଧ ନାହିଁ ବୋଲି ଯେ ଆପଣ କହୁଛନ୍ତି, ଏଇଟା ଗୋଟାଏ ବଡ଼ ଭୁଲ୍ କଥା । ଏହି ଭୁଲ୍‌ହେତୁ ଧାର୍ମିକ ବୋଲାଉଥିବା ଲୋକେ ଶୋଚନୀୟ ଅପରାଧମାନ କରିଛନ୍ତି । ଦୁଦୁରା ମଞ୍ଜି ବୁଣି ଗୋଲାପ ଫୁଲ ତୋଳିବାକୁ ମନ କରିବା ସଙ୍ଗେ ଏ ପନ୍ଥା ସମାନ । ମୁଁ ଯଦି ସମୁଦ୍ର ପାରି ହେବାକୁ ଚାହିଁବି, ତେବେ ମୋତେ ଜାହାଜ ବ୍ୟବହାର କରିବାକୁ ପଡ଼ିବ । ଯଦି ମୁଁ ସମୁଦ୍ର ପାରି ହେବାକୁ ବଳଦଗାଡ଼ି ବ୍ୟବହାରକରେଁ; ତେବେ ସେ ଗାଡ଼ି ଓ ମୁଁ ଦୁହେଁ ପାଣିରେ ବୁଡ଼ି ଯିବୁଁ । 'ଯେମିତି ଠାକୁର ସେମିତି ଭକ୍ତ', କଥାଟା ଭଲକରି ଚିନ୍ତା କରିବା ଦରକାର । ତାହାର ବିକୃତ ଅର୍ଥ କରି ଲୋକେ ବାଟବଣା ହୋଇ ଯାଇଛନ୍ତି । ସାଧନ ହେଉଛି ବୀଜ ଏବଂ ସାଧ୍ୟ ବା ଲକ୍ଷ୍ୟ

ହେଉଛି ବୃକ୍ଷ । ବୃକ୍ଷ ଓ ବୀଜ ମଧ୍ୟରେ ଯେଉଁ ସମ୍ପର୍କ ରହିଛି, ସାଧ୍ୟ ଓ ସାଧନା ମଧ୍ୟରେ ସେହି ଅବିଚ୍ଛେଦ୍ୟ ସମ୍ପର୍କ ରହିଛି । ଶଇତାନକୁ ପୂଜା କରି ମୁଁ ଈଶ୍ୱର-ଭଜନର ଫଳ ପାଇବା କେବେହେଁ ସମ୍ଭବ ହୋଇ ନ ପାରେ । ସେଥିପାଇଁ ଆମେ ଯଦି କହିବା ଯେ, ପନ୍ଥା ପନ୍ଥକେ ଶଇତାନର ହେଉ, ଆମେ ଭଜିବାକୁ ଚାହୁଁ ଭଗବାନ୍‌ଙ୍କୁ, ତେବେ ସେଇଟା ଅଜ୍ଞତା ହେବ । ଯେମିତି କର୍ମ, ସେମିତି ଫଳ ।

ଇଂରେଜମାନେ ଧ୍ୱଂସାକାଣ୍ଡ କରି ୧୮୩" ମସିହାରେ ବିଶେଷ ଭୋଟ ଅଧିକାର ପାଇଲେ । ଏହି ଧ୍ୱଂସାକାଣ୍ଡ କରି ସେମାନେ ନିଜର କର୍ତ୍ତବ୍ୟ କ'ଣ ଅଧିକ ଭଲରୂପେ ବୁଝି ପାରିଲେ । ଭୋଟ୍ ଦେବା ଅଧିକାର ହାସଲ କରିବା ସେମାନଙ୍କର ଉଦ୍ଦେଶ୍ୟ ଥିଲା ଏବଂ ପାଶବିକ ବଳ ପ୍ରୟୋଗ କରି ସେମାନେ ତାହା ପାଇଲେ । ମାତ୍ର ପ୍ରକୃତ ଅଧିକାର ତ ନିଜର କର୍ତ୍ତବ୍ୟ ପାଳନରୁ ହିଁ ମିଳିଥାଏ । ସେ ଅଧିକାର ସେମାନେ ପାଇ ପାରିଲେ ନାହିଁ । ଫଳରେ, ସମସ୍ତେ ଅଧିକାର ହାସଲ କରିବାର ଚେଷ୍ଟାରେ ରହିଲେ, ନିଜର କର୍ତ୍ତବ୍ୟ କଥା କେହି ଭାବିଲେ ନାହିଁ । ଯେଉଁଠି ସମସ୍ତେ ନିଜ ନିଜ ଅଧିକାର କଥା କହିବେ, ସେଠାରେ କିଏ କାହାକୁ ଅଧିକାର ଦେବ ? ଏହା ବୋଲି ମୁଁ କହୁନାହିଁ ଯେ, ସେମାନେ କୌଣସି କର୍ତ୍ତବ୍ୟ ପାଳନ କରନ୍ତି ନାହିଁ । ମାତ୍ର ଯେଉଁ ଅଧିକାର ସେମାନେ ଦାବୀ କରୁଥିଲେ, ତାହା ପାଇ ସାରିଲା ପରେ ଯେଉଁ ଅନୁରୂପ କର୍ତ୍ତବ୍ୟ ପାଳନ କରିବାର କଥା, ତାହା ସେମାନେ କଲେ ନାହିଁ । ସେମାନେ ଯୋଗ୍ୟତା ଅର୍ଜନ କଲେନାହିଁ ; ସେଥିପାଇଁ ସେମାନଙ୍କ ଅଧିକାର ବୋଝ ପରି ସେମାନଙ୍କ କାନ୍ଧ ଉପରେ ରହିଛି । ଅନ୍ୟ ଭାଷାରେ କହିଲେ, ସେମାନେ ଯେଉଁ ଉପାୟ ଅବଲମ୍ବନ କରିଥିଲେ, ଠିକ୍ ତାହାରି ଫଳ ପାଇଛନ୍ତି ।

ସେମାନଙ୍କର ଲକ୍ଷ୍ୟ ଅନୁସାରେ ସେମାନେ ଉପାୟ ଗ୍ରହଣ କରି- ଥିଲେ । ମୋର ଯଦି ଆପଣଙ୍କଠାରୁ ଆପଣଙ୍କ ଘଡ଼ିଟି ଛଡ଼େଇ ନେବାର କଥା ହେବ, ତେବେ ମୋତେ ଲଢ଼ିବାକୁ ପଡ଼ିବ । ଯଦି ମୁଁ ଆପଣଙ୍କ ଘଡ଼ି କିଣିବା କଥା ଭାବିବି, ତେବେ ମୋତେ ତା'ର ଦାମ୍ ଦେବାକୁ ପଡ଼ିବ, ଯଦି ଉପହାରରୂପେ ଘଡ଼ିଟି ନେବାକୁ ଚାହିଁବି, ତେବେ ମୋତେ ଆପଣଙ୍କଠାରେ ଅନୁନୟ ବିନୟ କରିବାକୁ ପଡ଼ିବ । ଘଡ଼ିଟି ପାଇବା ପାଇଁ ମୁଁ ଯେଉଁ ଉପାୟ ଅବଲମ୍ବନ କରିବି, ସେହି ଉପାୟ ଅନୁସାରେ ସେହି ଘଡ଼ିଟି ଚୋରି ମାଲ ବା ମୋର ବ୍ୟକ୍ତିଗତ ସମ୍ପତ୍ତି ବା ଉପହାର ହେବ । ଏ ତିନୋଟି ଉପାୟର ତିନୋଟି ଅଲଗା ଅଲଗା ପରିଣତି ଘଟିବ । ତଥାପି, ଆପଣ କିପରି କହୁଛନ୍ତି ଯେ, ଉପାୟ ବା ସାଧନରେ କିଛି ଯାଏ ଆସେ ନାହିଁ ?

ବର୍ତ୍ତମାନ ଚୋରକୁ ଘରୁ ତଡ଼ିବା ଉଦାହରଣ କଥା ପକେଇବା । ଚୋରକୁ ତଡ଼ିବା ପାଇଁ ଯେ କୌଣସି ଉପାୟ ଅବଲମ୍ବନ କରିବା କଥା ଯେ ଆପଣ କହିଲେ, ସେ ବିଷୟରେ ମୁଁ ଆପଣଙ୍କ ସହିତ ଏକମତ ନୁହେଁ । ମୋ' ବାପା ଯଦି ମୋ ଘରେ ଚୋରି କରିବାକୁ ଆସିବେ, ତେବେ ମୁଁ ଗୋଟାଏ ପ୍ରକାରର ଉପାୟ ଅବଲମ୍ବନ କରିବି, ଯଦି ମୋର କେହି ପରିଚିତ ଲୋକ ଚୋରି କରିବାକୁ ଆସିବ, ତେବେ ମୁଁ ଅନ୍ୟ ଉପାୟ ଅବଲମ୍ବନ କରିବି ଏବଂ ଯଦି କୌଣସି ଅପରିଚିତ ଲୋକ ଆସିବ, ତେବେ ମୁଁ ଆଉ ଏକ ପ୍ରକାରର ଉପାୟ ଧରିବି । ଯଦି ସେ ଗୋରା ଲୋକ ହୋଇଥିବ, ତେବେ ଗୋଟାଏ ପ୍ରକାରର ଏବଂ ଭାରତୀୟ ହୋଇ- ଥିଲେ, ଆଉ ଏକ ପ୍ରକାରର ଉପାୟ ଅବଲମ୍ବନ କରିବା ଉଚିତ ବୋଲି ସମ୍ଭବତଃ ଆପଣ ମଧ୍ୟ କହିବେ । ଯଦି ଜଣେ ଦୁର୍ବଳ ଲୋକ

ଚୋର କରିବାକୁ ଆସିବ, ତେବେ ମୁଁ ସମ୍ପୂର୍ଣ୍ଣ ଅନ୍ୟ ପ୍ରକାରର ଉପାୟ ଧରିବି ; ଯଦି ମୋର ବଳ ସହିତ ସମାନ ବଳଥିବା ଲୋକ ଆସିବ, ତେବେ ମୁଁ ଆଉ ପ୍ରକାର ଉପାୟ ଧରିବି । ପୁଣି ଯଦି ଅସ୍ତ୍ରଶସ୍ତ୍ର ଧରି ଗୋଟାଏ ବଳୁଆ ଲୋକ ଚୋର କରିବାକୁ ଆସିବ, ତେବେ ମୁଁ ଭୁମା ହୋଇ ରହିବି । ବାପା ଚୋରି କରିବାକୁ ଆସିଲେ ମୋର ମନେହେଉଛି, ମୁଁ ଚୁପ୍‌ଚାପ୍ ଶୋଇ ରହିବି ଏବଂ ହାତ-ହତିଆର ଧରିଥିବା ଚୋର ଆସିଲେ ମଧ୍ୟ ଚୁପ୍‌ଚାପ୍ ଶୋଇ ରହିବି । ମୋ’ ବାପା, ଦୁର୍ବଳ ଚୋର, ଅସ୍ତ୍ରଶସ୍ତ୍ର ଧାରଣକାରୀ ବଳବାନ୍ ଚୋର—ବିଭିନ୍ନ ଚୋରଙ୍କ ପାଇଁ ମୁଁ ବିଭିନ୍ନ ପନ୍ଥା ଧରିବି ବା ହତିଆର ଧରିଥିବା ଚୋର ମୋ’ଠାରୁ ଅଧିକ ବଳବାନ୍ ହୋଇ ଥିବାରୁ ତାହାଠାରେ ମୁଣ୍ଡ ନୁଆଇଁ ଦେବି ଏବଂ ମୋ’ ଜିନିଷ ହରାଇବି । ବାପା ନିଜର ଅଧିକ ବଳ ଯୋଗୁଁ ମୋର ପଦାର୍ଥ ଚୋରାଇ ନେଉଛି ବୋଲି ମୋ’ ମନରେ ଦୟାଭାବ ଆସିବ ଏବଂ ମୋତେ କାନ୍ଦ ମାଡ଼ିବ ମାତ୍ର ହତିଆର ଧରିଥିବା ଲୋକର ବଳ ମୋ’ ମନରେ କ୍ରୋଧ ଜନ୍ମାଇବ । ଆମେ ଦୁହେଁ ଶୀଘ୍ର ପାଲଟି ଯିବୁଁ । ପରିସ୍ଥିତି ଏହିପରି ବିଚିତ୍ର ଆକାର-ପ୍ରକାର ଧରିବ । ଏହି ଦୃଷ୍ଟାନ୍ତଗୁଡ଼ିକରୁ ଆମର କି କି ଉପାୟ ଅବଲମ୍ବନ କରିବା ଉଚିତ୍, ପ୍ରତ୍ୟେକ ବିଷୟରେ ଆମେ ଦୁହେଁ ସମାନ ସିଦ୍ଧାନ୍ତରେ ଉପନୀତ ହୋଇ ପାରିବା ନାହିଁ । ଏସବୁ ଚୋରଙ୍କ ପାଇଁ କେଉଁ ଉପାୟ ଅବଲମ୍ବନ କରିବା ଉଚିତ, ତାହା ମୋତେ ସ୍ପଷ୍ଟ ଦିଶୁଛି । ମାତ୍ର, ସେ ପ୍ରତିକାର ଶୁଣିଲେ ଆପଣ ଛାନିଆଁ ହୋଇଯିବେ । ସେଥିପାଇଁ ମୁଁ ଆପଣଙ୍କ ଆଗରେ ତାହା କହିବାକୁ ଇତସ୍ତତଃ କରୁଛି । ମାତ୍ର ଆପଣ ତାହା ଇତ୍ୟବସରେ ଅନୁମାନ କରିନେବେ ବୋଲି ମୁଁ ଭାବୁଛି । ଯଦି ଆପଣ ତାହା ଅନୁମାନ କରିନପାରିବେ,

ତେବେ ପ୍ରତ୍ୟେକ କ୍ଷେତ୍ରରେ ଆପଣଙ୍କୁ ଅଲଗା ଅଲଗା ଉପାୟ ଅବଲମ୍ବନ କରିବାକୁ ହେବ । ମାତ୍ର ଆପଣ ଏତକ ବୁଝି ପାରିଲେ ଯେ, ଶତ୍ରୁକୁ ତଡ଼ିବା ପାଇଁ ଯେ କୌଣସି ଉପାୟ ଅବଲମ୍ବନ କରାଯାଇ ପାରିବ ନାହିଁ ଏବଂ ଆପଣଙ୍କ ଉପାୟ ଯେଉଁ ଧରଣର ହେବ, ତାହାର ପରିଣତି ସେହି ଅନୁସାରେ ଘଟିବ । ଅବସ୍ଥାକୁ ଖାପ୍ ଖାଇବା ଭଳି ଅନୁରୂପ ଉପାୟ ଆପଣଙ୍କୁ ଗ୍ରହଣ କରିବାକୁ ପଡ଼ିବ । ଯେ କୌଣସି ପ୍ରକାରେ ଘରୁ ଶତ୍ରୁକୁ ତଡ଼ିବାଟା, ଆପଣଙ୍କର କର୍ତ୍ତବ୍ୟ ହୋଇ ନ ପାରେ ।

ଚାଲନ୍ତୁ ଆଜ ଟିକିଏ ଆଗକୁ ଚର୍ଚ୍ଚା କରିବା । ସେହି ଅସ୍ତ୍ରଶସ୍ତ୍ରରେ ସୁସଜ୍ଜିତ ଲୋକ ଆପଣଙ୍କ ଜିନିଷ ଚୋରାଇ ନେଇଛି । ଆପଣ ତାହାର ଏହି କୁକର୍ମକୁ ମନେରଖିଛନ୍ତି । ଆପଣଙ୍କ ମନରେ ତାହା ପ୍ରତି କ୍ରୋଧ ପୂରି ରହିଛି । ଆପଣ ନିଜ ପାଇଁ ନୁହେଁ, ଲୋକଙ୍କର କଲ୍ୟାଣ ଦୃଷ୍ଟିରୁ ସେହି ଦସ୍ୟୁକୁ ଦଣ୍ଡ ଦେବାକୁ ଚାହୁଁଛନ୍ତି । ଆପଣ ଦଳେ ଲୋକଙ୍କୁ ଏକତ୍ର କରି ତାହାର ଘର ଉପରେ ଚଢ଼ାଉ କରିବାକୁ ଚାହାନ୍ତି । ସେ ଜାଣିପାରି ଘରୁ ପଳାଇବ ଏବଂ ସେ କ୍ରୁଦ୍ଧ ହୋଇ, ଆଉ ଦଳେ ଡକେଇତଙ୍କୁ ଠୁଳ କରାଇବ । ସେ ଏଥରକ ଦିନ ଦ୍ୱିପ୍ରହରେ ଆପଣଙ୍କ ଘର ଲୁଟି କରିବା ପାଇଁ କଡ଼ା ଧମକ୍ ଦେବ । ଆପଣ ତାହା ସାଙ୍ଗରେ ଲଢ଼ିବାକୁ ସଜବାଜ ହୋଇ ରହିଲେ । ଇତ୍ୟବସରରେ ସେହି ଡକାୟତ ଆପଣଙ୍କ ପାଖ-ପଡ଼ଶାକୁ ହଇରାଣ କଲା । ସେମାନେ ଆପଣଙ୍କ ନିକଟରେ ଆପତ୍ତି ଅଭିଯୋଗ କଲେ । ଆପଣ କହିଲେ, "ଏ ସବୁତ ମୁଁ ଆପଣମାନଙ୍କ ପାଇଁ କରୁଛି । ମୋ' ଧନ-ସମ୍ପତ୍ତି ଯେ ଗଲା, ସେଥିପାଇଁ ମୋର ଚିନ୍ତା ନାହିଁ ।" ଲୋକେ କହିଲେ— "ଏହା ପୂର୍ବରୁ ତ ସେ ଆମକୁ ଏପରି ହଇରାଣ କରୁ ନ ଥିଲା,

ଆପଣ ଯେଉଁ ଦିନରୁ ତା' ସାଙ୍ଗରେ ଶତ୍ରୁତା କଲେ, ସେହିଦିନୁ ସେ ଏସବୁ ଆରମ୍ଭ କଲା ।" ଆପଣ ଦ୍ୱିଧାରେ ପଡ଼ିଲେ । ଗରିବ ଲୋକଙ୍କ ପ୍ରତି ଆପଣଙ୍କ ମନରେ ଦୟା ଅଛି । ଏଣେ ସେମାନେ ଯାହା କହୁଛନ୍ତି, ସେ କଥା ମଧ୍ୟ ସତ୍ୟ । ବର୍ତ୍ତମାନ କଅଣ କରାଯିବ ? ଡକାୟତକୁ କଅଣ ତାହା ବାଟରେ ଛାଡ଼ି ଦିଆଯିବ ? ତାହା କଲେ ତ ଆପଣଙ୍କ ଇଜ୍ଜତ୍ ଚାଲିଯିବ । ଆପଣ ଗରିବ ଲୋକମାନଙ୍କୁ କହିଲେ – "କିଛି ଚିନ୍ତା ନାହିଁ । ଆସନ୍ତୁ, ମୋ' ଧନ ତ ଆପଣମାନଙ୍କର । ମୁଁ ଆପଣଙ୍କୁ ହତିଆର ଦେଉଛି । ସେ ହତିଆର କିପରି ବ୍ୟବହାର କରିବାକୁ ହୁଏ, ତାହା ମୁଁ ଆପଣଙ୍କୁ ଶିଖାଇ ଦେବି । ଆପଣ ସେ ବଦ୍‌ମାଶ୍‌କୁ ଛାଡ଼ନ୍ତୁ ନାହିଁ, ମାରନ୍ତୁ ।" ଏହିରୂପେ ମାଡ଼ଗୋଳ ବଢ଼ିବା ସଙ୍ଗେ ସଙ୍ଗେ ଡକାୟତଙ୍କର ସଂଖ୍ୟା ବଢ଼ିବ । ଆପଣ ଓ ଲୋକେ ନିଜେ ଏ ଦୁଃଖ ଅରଜିଲେ । ବୈରର ପ୍ରତିଶୋଧ ନେବାକୁ ଯାଇ ଫଳ ହେଲା ଏୟା ଯେ, ନିଜର ଶାନ୍ତି ହରାଇଲେ । ପୂର୍ବେ ମୃତ୍ୟୁକାଳ ଉପସ୍ଥିତ ହେଲେ, ମଣିଷ ମରୁଥିଲା । ଏଣିକି ତ ସବୁବେଳେ ମୃତ୍ୟୁଭୟ ଦେଖାଦେଲା । ଲୋକେ ସାହସ ହରାଇ ଡରୁଆ ହୋଇଗଲେ । ଆପଣ ଧୈର୍ଯ୍ୟ ଧରି ଚିନ୍ତା କଲେ ଦେଖିପାରିବେ ଯେ, ମୁଁ ଅତିରଞ୍ଜିତ କରି ଏ କଥା କହୁନାହିଁ । ଏ ଗଳ୍ପ ଗୋଟାଏ ପ୍ରକାରର ଉପାୟ ।

ବର୍ତ୍ତମାନ ଚାଲନ୍ତୁ, ଆଉ ଗୋଟାଏ ଉପାୟକୁ ଯାଞ୍ଚ କରିବା । ଚୋରକୁ ଆପଣ ଜଣେ ଅଜ୍ଞ ଭାଇ ବୋଲି ଭାବିଲେ । କେବେ ସୁଯୋଗ ମିଳିଲେ ତାକୁ ବୁଝାଇବା ପାଇଁ ଭାବିଲେ । ଆପଣ ଏ କଥା ମଧ୍ୟ ଭାବିଲେ ଯେ, ସେ ଚୋର ମଧ୍ୟ ଆମରି ପରି ଜଣେ ମଣିଷ । ସେ କେଉଁ କାରଣରୁ ଚୋରି କଲା, ତାହା ଆପଣ ଜାଣନ୍ତି

ନାହିଁ । ଆପଣ ଯେତେବେଳେ ସୁବିଧା ପାଇବେ, ସେତେବେଳେ ଚୋରି କରିବାର ପ୍ରବୃତ୍ତି ସେହି ଲୋକର ମନରୁ ଦୂର କରିଦେବେ ବୋଲି ଆପଣ ଭାବିଲେ । ଆପଣ ଏପରି ଭାବିବା ବେଳକୁ, ସେ ଲୋକ ପୁଣି ଚୋରି କରିବାକୁ ଆସିଲା । ଆପଣ ବିରକ୍ତ ହେଲେ ନାହିଁ । ଆପଣଙ୍କର ତାହା ପ୍ରତି ଦୟା ଜନ୍ମିଲା । ଆପଣ ଭାବିଲେ ଯେ, ଚୋରି କରିବା ଏ ଲୋକର ଗୋଟାଏ ରୋଗ । ଆପଣ କବାଟ-ଝରକା ଖୋଲିଦେଲେ । ନିଜ ଶୋଇବା ସ୍ଥାନ ବଦଳାଇ ଦେଲେ । ସେ ଲୋକ ଯେପରି ଚଞ୍ଚଳ ଜିନିଷପତ୍ର ଚୋରି କରି ନେଇ ଯାଇପାରିବ, ଆପଣ ସେହିପରି ରଖିଦେଲେ । ଚୋର ଆସି ଏ ସବୁ ଦେଖି ହାବୁଡ଼ା ହୋଇଗଲା । ତାକୁ ଏସବୁ ନୂଆ ଜଣା ପଡ଼ିଲା, ଜିନିଷପତ୍ର ସେ ଚୋରାଇ ନେଲା ମାତ୍ର ତାହାର ମନଟା ଆନ୍ଦୋଳିତ ହେଲା । ଆପଣଙ୍କ ବିଷୟରେ ସେ ଗାଁରେ ପଚରା-ଗୋଚରା କଲା । ଆପଣଙ୍କର ପ୍ରଶସ୍ତ ଓ ଅନ୍ୟ ପ୍ରତି ସ୍ନେହଭରା ହୃଦୟ କଥା ସେ ଜାଣିଲା । ସେ ଅନୁତାପ କଲା ଓ ଆପଣଙ୍କୁ କ୍ଷମା ମାଗିଲା । ଆପଣଙ୍କ ଜିନିଷପତ୍ର ଫେରାଇ ଦେଲା । ସେ ଚୋରି କରିବା ଛାଡ଼ି ଦେଇ ଆପଣଙ୍କ ସେବକ ପାଲଟି ଗଲା । ଆପଣ ତାକୁ କାମଧନ୍ଦା ଯୋଗାଇ ଦେଲେ । ଏହା ଦ୍ୱିତୀୟ ଉପାୟ । ଆପଣ ଦେଖିଲେ ଯେ, ଭିନ୍ନ ଭିନ୍ନ ଉପାୟର ପରିଣତି ଭିନ୍ନ ଭିନ୍ନ ହେଉଛି । ସବୁ ଚୋର ଠିକ୍ ଏହି ପ୍ରକାରର ଆଚରଣ କରିବେ ବା ସମସ୍ତଙ୍କଠାରେ ଆପଣଙ୍କ ପରି ଦୟାଭାବ ଥିବ ବୋଲି ମୁଁ ଏହାଦ୍ୱାରା ପ୍ରମାଣ କରିବାକୁ ଚାହୁଁନାହିଁ । ମାତ୍ର ଏତିକି ଦେଖାଇ ଦେବାକୁ ଚାହୁଁଛି ଯେ, ଭଲ ପରିଣତି ପାଇଁ ଭଲ ଉପାୟ ଅବଲମ୍ବନ କରିବା ଉଚିତ ଏବଂ ସବୁବେଳେ ନ ହେଲେ ସୁଦ୍ଧା ଅଧିକାଂଶ ଘଟଣାରେ ଅସ୍ତ୍ରବଳ ଅପେକ୍ଷା ସ୍ନେହ ଓ ଦୟା ଅଧିକ

ଶକ୍ତିଶାଳୀ ପ୍ରମାଣିତ ହୋଇଥାଏ । ପଶୁବଳ ଦ୍ୱାରା କ୍ଷୟକ୍ଷତି ଘଟେ, ମାତ୍ର ଦୟା କେବେହେଁ କ୍ଷତି କରେ ନାହିଁ ।

ବର୍ତ୍ତମାନ ଆବେଦନ ନିବେଦନ କଥା ପକେଇବା । ଯେଉଁ ଆବେଦନ-ପତ୍ର ପଛରେ ବଳ ନାହିଁ, ସେ ଆବେଦନ-ପତ୍ର ଯେ ମୂଲ୍ୟହୀନ, ଏଥିରେ ଟିକେହେଲେ ସନ୍ଦେହ ନାହିଁ । ତଥାପି ସ୍ୱର୍ଗୀୟ ଜଷ୍ଟିସ୍ ରାଣାଡେ କହୁଥିଲେ ଯେ, ଆବେଦନ-ପତ୍ର ଲୋକ-ଶିକ୍ଷାର ଗୋଟାଏ ସାଧନ । ତଦ୍ୱାରା ଲୋକଙ୍କୁ ସେମାନଙ୍କ ଅବସ୍ଥା ସମ୍ବନ୍ଧରେ ଅବହିତ କରାଯାଇପାରେ ଏବଂ ଶାସନକର୍ତ୍ତାମାନଙ୍କୁ ମଧ୍ୟ ଚେତେଇ ଦିଆଯାଏ । ଏହି ଦୃଷ୍ଟିରୁ ଭାବିଲେ ଆବେଦନ-ପତ୍ର ଦେବା କିଛି ଅକାରଣ ଯାଏନାହିଁ । ସ୍ୱମକକ୍ଷ ଲୋକ ଆବେଦନ କଲେ, ତାହା ତାହାର ନମ୍ରତାର ପରିଚାୟକ ଧରାଯାଏ । ଜଣେ କ୍ରୀତଦାସ ନିବେଦନ କଲେ, ସେଇଟା ତାହାର ଦାସତ୍ୱର ପରିଚାୟକ ହେବ । ଯେଉଁ ଆବେଦନପତ୍ର ପଛରେ ବଳଥାଏ, ତାହା ସମକକ୍ଷ ଲୋକର ଆବେଦନ । ସେ ନିଜର ଦାବୀକୁ ଆବେଦନ-ପତ୍ର ଆକାରରେ ପ୍ରକାଶ କରେ ଓ ତଦ୍ୱାରା ତାହାର ମହତ୍ତ୍ୱର ପରିଚୟ ମିଳେ । ଆବେଦନ-ପତ୍ର ପଛରେ ଦୁଇପ୍ରକାର ବଳ ଥାଏ । "ଯଦି ଆପଣ ଆମର ଦାବୀ ପୂରଣ ନ କରିବେ, ତେବେ ଆପଣଙ୍କୁ ମାରିବୁ ।" ଏଇଟା ହେଉଛି ଅସ୍ତ୍ରଶସ୍ତ୍ରର ବଳ । ଏହାର କୁପରିଣତି ଆମେ ଦେଖିସାରିଛୁଁ । ଆଉ ଗୋଟାଏ ବଳ ହେଉଛି 'ଆପଣ ଯଦି ଆମର ଦାବୀ ପୂରଣ ନ କରିବେ, ତେବେ ଆମେ ଆପଣଙ୍କ ନିକଟରେ ଆଉ ଆବେଦନକାରୀ ହୋଇ ରହିବୁ ନାହିଁ । ଆମେ ଆବେଦନକାରୀ ହୋଇ ରହିଥିଲେ, ଆପଣ ସିନା ଆମକୁ ଶାସନ କରୁଥିବେ, ଆମେ ଆପଣଙ୍କ ସହିତ କୌଣସି ସମ୍ପର୍କ ରଖିବୁ ନାହିଁ ।" ଏ ବଳକୁ ଆପଣ ପ୍ରେମବଳ ବା

ଆତ୍ମବଳ ବା ସତ୍ୟାଗ୍ରହ କହି ପାରନ୍ତି । ଏ ବଳ ଅବିନାଶୀ । ଯେଉଁଲୋକ ଏ ବଳ ପ୍ରୟୋଗ କରେ, ସେ ନିଜର ସ୍ଥିତିକୁ ଭଲଭାବରେ ବୁଝିଥାଏ । ଆମର ଗୋଟିଏ ପୁରୁଣା ପ୍ରବଚନ ଅଛି । ତାହାର ଅର୍ଥ ହେଉଛି "ଏକା ନାହିଁ ଚଉକରେ ଛତିଶ ପ୍ରକାରର ରୋଗ ଭଲ ହୋଇଯାଏ ।" ଯାହାଠାରେ ଏ ବଳ ଅଛି ଅସ୍ତ୍ରବଳ ତାହାର କୌଣସି କ୍ଷତି କରି ପାରିବ ନାହିଁ ।

ପିଲା ନିଆଁରେ ଗୋଡ଼ ପୂରାଇଲେ ତାକୁ ଆକଟରେ ରଖିବା ଉଦାହରଣଟିକୁ ଚିନ୍ତା ଚିନ୍ତା କରି ଆଲୋଚନା କଲେ ଆପଣ ଯୁକ୍ତିରେ ହାରିଯିବେ, ସେ ପିଲା ସଙ୍ଗରେ ଆପଣ କପରି ଆଚରଣ କରିବେ ? ମନେ କରନ୍ତୁ, ସେ ପିଲା ଆପଣଙ୍କୁ ଜୋରରେ ଧକ୍କା ଦେଇ ନିଆଁରେ ପଶିଯିବ । ସେ କ୍ଷେତ୍ରରେ ଆପଣ ତାକୁ ରକ୍ଷା କରି ପାରିବେ ନାହିଁ । ଏଥିପାଇଁ ଆପଣଙ୍କ ହାତରେ ଉପାୟ ହେଉଛି ଯେ ତାକୁ ନିଆଁରେ ପଡ଼ିଯିବାକୁ ବାଧା ଦେବା ପାଇଁ ଆପଣ ତାହାର ପ୍ରାଣ ନେବେ, କିମ୍ବା ତାର ନିଆଁରେ ପଡ଼ିବା ଆପଣ ସହି ପାରିବେ ନାହିଁ ବୋଲି ଆପଣ ନିଜେ ନିଆଁକୁ ଡେଇଁପଡ଼ି ଜୀବନ ଦେଇ ଦେବେ । ଆପଣ ତ ସେ ପିଲାର ପ୍ରାଣ ନେବେ ନାହିଁ । ପୁଣି ଆପଣଙ୍କଠାରେ ଯଦି ପିଲା ପ୍ରତି ସମ୍ପୂର୍ଣ୍ଣ ଦୟାଭାବ ନ ଥିବ ସମ୍ଭବତଃ ଆପଣ ନିଜ ଜୀବନ ହରାଇ ପାରିବେ ନାହିଁ । ତାହାହେଲେ ଆପଣ ଅନନ୍ୟୋପାୟ ହୋଇ ସେ ପିଲାକୁ ନିଆଁକୁ ଡେଇଁବାକୁ ଛାଡ଼ି ଦେବେ । ଏହିରୂପେ ସେ ପିଲା ପ୍ରତି ଆପଣ ଅନ୍ତତଃ ପଶୁବଳ ପ୍ରୟୋଗ କରି ପାରିବେ ନାହିଁ । ସେ ପିଲାକୁ ଅନ୍ୟ କୌଣସି ପ୍ରକାରେ ଅଟକାଇ ପାରିଲେ, ଅଟକାଇବେ । ଆପଣ ଯଦି ପାରନ୍ତି, ତେବେ ପିଲାକୁ ନିଆଁରେ ପଡ଼ିବାରୁ ବାଧାଦେବା

ପାଇଁ ବଳପ୍ରୟୋଗ କରିବେ । ସେହି ବଳପ୍ରୟୋଗ ନିମ୍ନ ସ୍ତରର ହେଲେ ହେଁ ତଥାପି ଆପଣ ତାହାକୁ ପଶୁବଳ ବୋଲି ଭାବିବେ ନାହିଁ—ମୋର ଆଶା ସେହିଟା ଅନ୍ୟ କିସମର ବଳ ଏବଂ ସେ ବଳ କଅଣ ତାହା ଆମେ ବୁଝିବା ଆବଶ୍ୟକ ।

ମନେ ରଖନ୍ତୁ ଯେ ସେ ପିଲାକୁ ଅଟକାଇବାରେ ଆପଣ କେବଳ ସେଇ ପିଲାର ମଙ୍ଗଳ ଦେଖୁଛନ୍ତି । ତାହାର ମଙ୍ଗଳ ଦୃଷ୍ଟିରୁ ଆପଣ ତାହା ଉପରେ ଅଙ୍କୁଶ ରଖିବାକୁ ଚାହୁଁଛନ୍ତି । ଏ ଉଦାହରଣ ଇଂରେଜଙ୍କ ପ୍ରତି ପ୍ରଯୁଜ୍ୟ ହୋଇ ପାରିବ ନାହିଁ । ଆପଣ ଇଂରେଜଙ୍କ ପ୍ରତି ଯେଉଁ ପଶୁବଳ ପ୍ରୟୋଗ କରିବାକୁ ଚାହୁଁଛନ୍ତି ସେଥିରେ ଆପଣ ନିଜର ଅର୍ଥାତ୍ ଭାରତୀୟ ପ୍ରଜାଙ୍କର ସ୍ୱାର୍ଥ ଦେଖୁଛନ୍ତି । ସେଥିରେ ତିଳେ ହେଲେ ଦୟା ବା ପ୍ରେମ ନାହିଁ । ଯଦି ଆପଣ କହିବେ ଯେ ଇଂରେଜମାନେ ଯେଉଁ ମନ୍ଦ କାର୍ଯ୍ୟ କରୁଛନ୍ତି ସେଗୁଡ଼ାକ ପୂର୍ବୋକ୍ତ ନିଆଁ ସଙ୍ଗରେ ତୁଳନା କରାଯାଇ ପାରେ ଏବଂ ଅଜ୍ଞତା ହେତୁ ସେମାନେ ନିଆଁରେ ପଶୁଛନ୍ତି ଏବଂ ସେମାନେ ଶିଶୁ ସଦୃଶ ସମାନ, ଆପଣ ଦୟା ପରବଶ ହୋଇ ସେହି ଶିଶୁସମ ଅଜ୍ଞାନୀ ଇଂରେଜମାନଙ୍କୁ ନିଆଁ ରୂପକ ମନ୍ଦ କାର୍ଯ୍ୟରୁ ରକ୍ଷା କରିବାକୁ ଚାହୁଁଛନ୍ତି, ତେବେ ଯେ କୌଣସି ଲୋକ ଏପରି ମନ୍ଦକାର୍ଯ୍ୟ କରୁଥିବ ତାହାକୁ ସେଥିରୁ ନିବୃତ୍ତ କରାଇବାକୁ ଏବଂ ଶିଶୁକୁ ରକ୍ଷା କରିବା ପାଇଁ ନିଜର ପ୍ରାଣ ଦେବା ଯେପରି ଉଚିତ ଭାବନ୍ତେ, ସେହିପରି ଏ କ୍ଷେତ୍ରରେ ଆପଣଙ୍କୁ ନିଜର ପ୍ରାଣ ଉତ୍ସର୍ଗ କରିବାକୁ ପଡ଼ିବ । ଆପଣ ଯଦି ଏହି ଅପାର ଦୟା କରିବାକୁ ସମର୍ଥ ତେବେ ଆପଣ ତାହା କରନ୍ତୁ । ମୁଁ କାମନା କରେଁ ।

# ସତ୍ୟାଗ୍ରହ ବା ଆତ୍ମବଳ

ପାଠକ—ଆପଣ ଯେଉଁ ସତ୍ୟାଗ୍ରହ ବା ଆତ୍ମବଳ କଥା କହୁଛନ୍ତି, ଇତିହାସରେ ତାହାର ସଫଳତାର କୌଣସି ପ୍ରମାଣ ଅଛି କି ? ଏହି ଆତ୍ମବଳ ଦ୍ୱାରା କେବେ କୌଣସି ରାଷ୍ଟ୍ରର ଉତ୍ଥାନ ଘଟିଛି କି ? ଶାରୀରିକ ଦଣ୍ଡ ନ ଦେଲେ ଦୁଷ୍ଟଲୋକ ସେମାନଙ୍କର କୁକର୍ମଗୁଡ଼ିକ ଛାଡ଼ିବେ ନାହିଁ ବୋଲି ମୋ' ମନରେ ଏପର୍ଯ୍ୟନ୍ତ ଧାରଣା ରହିଛି ।

ସମ୍ପାଦକ—ତୁଳସୀ ଦାସ କହିଛନ୍ତି, "ଅହଙ୍କାର ଯେପରି ଏ ଦେହର ମୂଳତତ୍ତ୍ୱ ସେହିପରି ଦୟା ବା ପ୍ରେମହିଁ ଧର୍ମର ମୂଳତତ୍ତ୍ୱ । ତେଣୁ ଏ ଘଟରେ ପ୍ରାଣ ଥିବାଯାଏ ଦୟାକୁ ଛାଡ଼ିବା ଉଚିତ ନୁହେଁ ।" ମୋତେ ତ ଏ ପଦଟି ଶାସ୍ତ୍ର-ବଚନ ପରି ଜଣା ପଡ଼େ । ଦୁଇରେ ଦୁଇ ମିଶିଲେ ଚାରି ହୁଏ ବୋଲି ମୁଁ ଯେପରି ବିଶ୍ୱାସ କରେଁ, ଏ ପଦଟିକୁ ଠିକ୍ ସେହିପରି ବିଶ୍ୱାସ କରେଁ । ଦୟାବଳ ହିଁ ଆତ୍ମବଳ ବା ସତ୍ୟାଗ୍ରହ ଏବଂ ଏହି ବଳର ପ୍ରମାଣ ଆମେ ପ୍ରତି ପଦେ ପଦେ ପାଉଛୁଁ । ସେ ବଳ ନ ଥିଲେ ଏ ପୃଥିବୀ ରସାତଳକୁ ଯାଆନ୍ତାଣି କିନ୍ତୁ ଆପଣ ତ ଐତିହାସିକ ପ୍ରମାଣ ଚାହୁଁଛନ୍ତି । ତେଣୁ ଇତିହାସ କାହାକୁ କହନ୍ତି, ତାହା ଆଗ ଜାଣିବାକୁ ହେବ ।

'ଇତିହାସ'ର ଶବ୍ଦାର୍ଥ ହେଉଛି ଏହିପରି ଘଟିଥିଲା । ଇତିହାସର ଏହି ପ୍ରକାର ଅର୍ଥ କଲେ, ଅନେକ ପ୍ରମାଣ ଦିଆଯାଇ

ପାରିବ । 'ଇତିହାସ' ଯେଉଁ ଇଂରେଜୀ ହିଷ୍ଟ୍ରି (history) ଶବ୍ଦର ଅନୁବାଦ, ସେହି ଇଂରେଜୀ ଶବ୍ଦର ଅର୍ଥ ଅନୁସାରେ ଇତିହାସ ବୋଇଲେ ରଜା ଓ ମହାରଜାଙ୍କ କାର୍ଯ୍ୟାବଳୀକୁ ବୁଝାଏ । ସେହି ଅର୍ଥରେ ଦେଖିଲେ, ଇତିହାସରୁ ସତ୍ୟାଗ୍ରହର ପ୍ରମାଣ ମିଳିବ ନାହିଁ । ଟିଣ ଖଣିରେ ଯଦି ଆପଣ ରୁପା ଖୋଜିବାକୁ ଯିବେ, ତେବେ ତାହା ମିଳିବ କପରି ? ଇତିହାସରେ ତ ଆପଣଙ୍କୁ ଏ ଦୁନିଆର ଯୁଦ୍ଧ-ବିଗ୍ରହର ରେକର୍ଡ଼ ବା ବିବରଣୀମାନ ମିଳିବ । ସେଥିପାଇଁ ଇଂରେଜୀରେ ଗୋଟିଏ ପ୍ରବାଦ ଅଛି ଯେ, ଯେଉଁ ରାଷ୍ଟ୍ରର ଇତିହାସ ନାହିଁ, ଅର୍ଥାତ୍ ଯୁଦ୍ଧ ନାହିଁ, ସେହି ରାଷ୍ଟ୍ର ସୁଖୀ । ରଜାମାନେ କପରି ଖେଳୁଥିଲେ, କପରି ନରହତ୍ୟା କରୁଥିଲେ, କପରି ଏକ ଅପରର ସହିତ ଶତ୍ରୁତା ସାଧୁଥିଲେ, ସେ ସବୁ କଥା ଇତିହାସରୁ ମିଳିବ । ଏହା ହିଁ ଯଦି ଇତିହାସ, ଯଦି ପୃଥିବୀରେ କେବଳ ଏହିଗୁଡ଼ିକ ଘଟିଛି, ତେବେ ତ ଏହି ପୃଥିବୀ କେଉଁ କାଳରୁ ଧ୍ୱଂସ ପାଇ ଯାଇଥାନ୍ତା । ଏ ବିଶ୍ୱର ଇତିବୃତ୍ତ ଯଦି ଯୁଦ୍ଧରୁ ଆରମ୍ଭ ହୋଇଥାନ୍ତା, ତେବେ ଆଜି ଜଣେ ସୁଦ୍ଧା ମଣିଷ ଜୀବିତ ନ ଥାନ୍ତା । ଯେଉଁ ଦେଶ ଏ ଯୁଦ୍ଧ କବଳରେ ପଡ଼ିଛି, ତାହାର ଏହି ଦଶା ହୋଇଛି । ଉଦାହରଣ ସ୍ୱରୂପ, ଅଷ୍ଟ୍ରେଲିଆର ଆଦିମ ଅଧିବାସୀଙ୍କର ଆଜି ଚିହ୍ନବର୍ତ୍ତି ନାହିଁ । ଅଷ୍ଟ୍ରେଲିଆରେ ଅନ୍ୟାୟ ଭାବରେ ପ୍ରବେଶକାରୀ ଗୋରମାନେ ସେମାନଙ୍କ ମଧ୍ୟରୁ ଜଣେ ଅଧେକୁ ସୁଦ୍ଧା ଜୀଅନ୍ତା ରଖିଛନ୍ତି କି ନାହିଁ ସନ୍ଦେହ । ଯେଉଁ ଜାତି ସମ୍ପୂର୍ଣ୍ଣ ମୂଳପୋଛ ହୋଇଗଲା, ସେ ଜାତିର ଲୋକେ ତ ଆତ୍ମରକ୍ଷା କରିବା ପାଇଁ ଆତ୍ମାର ବଳ (ସତ୍ୟାଗ୍ରହ) କରି ନ ଥିଲେ ଏବଂ ଅଷ୍ଟ୍ରେଲିଆବାସୀ ଗୋରମାନଙ୍କର ମଧ୍ୟ ଯେ, ଦିନେ ସେହି ଦଶା ଘଟିବ, ଏହା ଜାଣିବା ପାଇଁ ଅଧିକ ଦୂରଦୃଷ୍ଟି ଦରକାର ନାହିଁ ।

"ଯେଉଁମାନେ ତରବାରିର ଆଶ୍ରୟ ନିଅନ୍ତି, ସେମାନଙ୍କର ମଧ୍ୟ ସେହି ତରବାରି ଦ୍ୱାରା ମୃତ୍ୟୁ ଘଟେ ।" ପେଶାଦାର ପହଁରିବା ଲୋକେ ବୁଡ଼ି ମରନ୍ତି ବୋଲି ଗୋଟାଏ ପ୍ରବଚନ ଅଛି ।

ପୃଥିବୀରେ ଯେ ଆଜି ପର୍ଯ୍ୟନ୍ତ ଏତେ ସଂଖ୍ୟକ ମଣିଷ ଯେ ବଞ୍ଚି ରହିଛନ୍ତି, ସେଇଥିରୁ ପ୍ରମାଣିତ ହେଉଛି ଯେ, ଏ ପୃଥିବୀ ଅସ୍ତ୍ରବଳ ଉପରେ ନିର୍ଭର କରି ତିଷ୍ଠି ନାହିଁ । ସତ୍ୟ, ଦୟା ବା ଆତ୍ମବଳ ହିଁ ପୃଥିବୀର ଆଧାର । ସେଥିପାଇଁ ସବୁଠାରୁ ବଡ଼ ଐତିହାସିକ ପ୍ରମାଣ ହେଉଛି ଯେ, ଏତେ ଯୁଦ୍ଧ-ବିଗ୍ରହ ସତ୍ତ୍ୱେ ଏ ପୃଥିବୀ ଏତେ ଦିନଯାଏ ତିଷ୍ଠି ରହିଛି ।

ହଜାର ହଜାର ଲୋକ ଏହି ଆତ୍ମବଳ ବା ସ୍ନେହପ୍ରୀତିର ବଳରେ ବଞ୍ଚି ରହିଛନ୍ତି । କୋଟି କୋଟି ପରିବାରର ଛୋଟିଆ ଛୋଟିଆ ମନୋମାଳିନ୍ୟ ଏହି ପ୍ରେମ-ଭାବନାରେ କୁଆଡ଼େ ଉଭେଇ ଯାଉଛି । ଶହ ଶହ ଜାତି ଯେ, ଏ ପୃଥିବୀରେ ମିଳିମିଶି ଶାନ୍ତିରେ ରହୁଛନ୍ତି, ଏ କଥା ଇତିହାସ ଲକ୍ଷ୍ୟ କରୁନାହିଁ କିମ୍ବା ଲିପିବଦ୍ଧ କରୁନାହିଁ । ଯେତେବେଳେ ସତ୍ୟ, ଦୟା ବା ପ୍ରେମର ଧାରା ଟିକିଏ ବ୍ୟାହତ ହୋଇ ଯାଉଛି, ସେତିକିବେଳେ ତାହା ଇତିହାସରେ ଲିପିବଦ୍ଧ ହୋଇ ରହୁଛି । ଏକା ଘରର ଦୁଇ ଭାଇ କଳି ଲାଗୁଛନ୍ତି । ଦୁହିଁଙ୍କ ମଧ୍ୟରୁ ଜଣେ ଆର ଭାଇ ବିରୁଦ୍ଧରେ ସତ୍ୟାଗ୍ରହ ବା ପ୍ରେମ-ବଳ ପ୍ରୟୋଗ କରୁଛି । ଦୁହେଁ ପୁଣି ମିଳିମିଶି ରହୁଛନ୍ତି । ଏ କଥା କିଏ ଟିପି ରଖୁଛି ? ଅଥଚ ଯଦି ଦୁଇ ଭାଇଙ୍କ ମଧ୍ୟରେ ଓକିଲ ଯୋଗୁଁ ବା ଅନ୍ୟ କାରଣରୁ ଶତ୍ରୁତା ବଢ଼ନ୍ତା ଓ ସେମାନେ ଅସ୍ତ୍ରଧାରଣ କରନ୍ତେ ବା ମାମଲାମକଦ୍ଦମା କରନ୍ତେ, (ମକଦ୍ଦମା ମଧ୍ୟ ପଶୁବଳ ପ୍ରଦର୍ଶନର ଗୋଟିଏ ପ୍ରକାରର ନମୁନା) ତେବେ ସେହି ଦୁଇ ଭାଇଙ୍କର ନାଆଁ ଖବରକାଗଜରେ ପ୍ରକାଶ

ପାଆନ୍ତା, ପଡ଼ୋଶୀମାନେ ଏ ବିଷୟରେ ଚର୍ଚ୍ଚା କରନ୍ତେ ଏବଂ ସମ୍ଭବତଃ ଇତିହାସରେ ମଧ୍ୟ ସେ କଥା ଲେଖା ହୁଅନ୍ତା । ପରିବାର ଓ ସମ୍ପ୍ରଦାୟ ମଧ୍ୟରେ ଯାହା ଘଟେ, ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ମଧ୍ୟ ତାହା ହିଁ ଘଟେ । ପରିବାର ପାଇଁ ଗୋଟାଏ ପ୍ରକାରର ଆଇନ୍ ଏବଂ ରାଷ୍ଟ୍ର ପାଇଁ ଆଉ ଗୋଟାଏ ଆଇନ୍ ବୋଲି ମନେକରିବାର କୌଣସି କାରଣ ନାହିଁ । ଇତିହାସ ଅସ୍ୱାଭାବିକ ଘଟଣାଗୁଡ଼ିକୁ ଲିପିବଦ୍ଧ କରେ । ଆତ୍ମବଳ ବା ସତ୍ୟାଗ୍ରହ ସ୍ୱାଭାବିକ । ତେଣୁ କେହି ତାହାକୁ ଲିପିବଦ୍ଧ କରିବା ଆବଶ୍ୟକ ମନେକରନ୍ତି ନାହିଁ ।

ପାଠକ—ଆପଣଙ୍କ କଥାରୁ ଜଣାପଡ଼ୁଛି ଯେ, ଆପଣଙ୍କ ମତରେ ସତ୍ୟାଗ୍ରହର ଦୃଷ୍ଟାନ୍ତଗୁଡ଼ିକ ଇତିହାସରେ ଦେଖିବାକୁ ମିଳିବ ନାହିଁ । ଏ ସତ୍ୟାଗ୍ରହକୁ ଭଲ ଭାବରେ ବୁଝିବା ଦରକାର । ତେଣୁ ଆପଣ ଯାହା କହିବାକୁ ଚାହାନ୍ତି, ତାହା ଆହୁରି ସ୍ପଷ୍ଟ ଭାଷାରେ ବୁଝାଇଲେ ଭଲ ହେବ ।

ସମ୍ପାଦକ—ସତ୍ୟାଗ୍ରହ ବା ଆତ୍ମବଳକୁ ଇଂରାଜୀରେ 'ପ୍ୟାସିଭ୍ ରେଜିଷ୍ଟାନ୍ସ' (Passive resistance) କୁହାଯାଏ । ଯେଉଁମାନେ ନିଜ ଅଧିକାର ହାସଲ କରିବା ପାଇଁ ନିଜେ ଦୁଃଖ ଭୋଗ କରିଥିଲେ, ସେମାନଙ୍କର ସେହି ଦୁଃଖ ସହିବା ପ୍ରଣାଳୀକୁ ପ୍ରକାଶ କରିବା ପାଇଁ ଏ ଶବ୍ଦ ବ୍ୟବହୃତ ହୋଇଛି । ଅସ୍ତ୍ର ବଳରେ ଲଢ଼ିବାର ଉଦ୍ଦେଶ୍ୟଠାରୁ ଏହାର ଉଦ୍ଦେଶ୍ୟ ଅଲଗା । ଯେତେବେଳେ ମୋର ବିବେକକୁ ଖରାପ ଲାଗୁଥିବା କୌଣସି କାର୍ଯ୍ୟ କରିବାକୁ ମୁଁ ଅସ୍ୱୀକାର କରେଁ, ସେତେବେଳେ ମୁଁ ସତ୍ୟାଗ୍ରହ ବା ଆତ୍ମବଳ ପ୍ରୟୋଗ କରେଁ । ଉଦାହରଣ ସ୍ୱରୂପ, ସରକାର ଏପରି କୌଣସି ଆଇନ ପ୍ରଣୟନ

କଲେ, ଯେଉଁ ଆଇନ କି ମୋ' ପ୍ରତି ପ୍ରଯୁଜ୍ୟ ହେବ ଏବଂ ମୁଁ ସେ ଆଇନକୁ ପସନ୍ଦ କଲି ନାହିଁ । ଯଦି ସରକାରଙ୍କ ଉପରେ ହିଂସା ପ୍ରୟୋଗ କରି ଏହି ଆଇନକୁ ରଦ୍ଦ କରାଏଁ, ତେବେ ମୁଁ ଶରୀର-ବଳ ପ୍ରୟୋଗ କଲି ବୋଲି କୁହାଯିବ । ଯଦି ମୁଁ ସେ ଆଇନକୁ ମୂଳରୁ ଅନୁମୋଦନ ନ କରିବି ଓ ସେଥିଯୋଗୁଁ ଯେଉଁ ଦଣ୍ଡ ଦିଆଯିବ ତାହା ମୁଁ ଭୋଗ କରିବି, ତେବେ ମୁଁ ସତ୍ୟାଗ୍ରହ ବା ଆତ୍ମବଳ ପ୍ରୟୋଗ କଲି ବୋଲି କୁହାଯିବ । ସତ୍ୟାଗ୍ରହରେ ଲୋକ ନିଜେ ତ୍ୟାଗ କରେ, ନିଜକୁ ବଳି ଦିଏ ।

ଅନ୍ୟକୁ ବଳି ଦେବା ଅପେକ୍ଷା ନିଜକୁ ବଳି ଦେବା ଯେ ଶ୍ରେୟସ୍କର, ଏ କଥା ସମସ୍ତେ ସ୍ୱୀକାର କରିବେ । ତାହାଛଡ଼ା ସତ୍ୟାଗ୍ରହ ବା ଆତ୍ମବଳ ପ୍ରୟୋଗ କରି ଲଢ଼ୁ ଲଢ଼ୁ ଯଦି ସେହି ଉଦ୍ଦେଶ୍ୟ ଅନ୍ୟାୟ ବୋଲି ଜଣାଯିବ, ତେବେ କେବଳ ସତ୍ୟାଗ୍ରହ କରୁଥିବା ଲୋକ ହିଁ ଦୁଃଖ ଭୋଗିବ । ଅର୍ଥାତ୍ ନିଜ ଭୁଲ୍‌ର ଦଣ୍ଡ ସେ ନିଜେ ଭୋଗିବ । ଅନେକ ସମୟରେ ଏପରି ଅନେକ ଘଟଣା ଘଟେ, ଯେଉଁଥିରେ ଲୋକେ ଭୁଲବଶତଃ ଯୋଗ ଦିଅନ୍ତି । କେହି ନିଜେ ନ୍ୟାୟ ମାର୍ଗରେ ପୁରାପୁରି ରହିଛି ବୋଲି ଦାବୀ କରି ପାରିବ ନାହିଁ କିମ୍ବା କୌଣସି ଲୋକ ଅମୁକ କାମଟା ପୁରାପୁରି ଖରାପ ବୋଲି ଦୃଢ଼ରୂପେ କହି ପାରିବ ନାହିଁ । ମାତ୍ର ଯେଉଁ ଲୋକର ମତରେ ଯେ ପର୍ଯ୍ୟନ୍ତ ସେହି କାମଟା ନିଶ୍ଚିତରୂପେ ଖରାପ, ସେ ପର୍ଯ୍ୟନ୍ତ ତାହାପାଇଁ ସେଇଟା ଖରାପ । ତେଣୁକରି ତାହା ପକ୍ଷରେ ସେ କାମ କରିବା ଉଚିତ ନୁହେଁ ଏବଂ ସେଥିପାଇଁ ତାହାର ପରିଣାମ ସ୍ୱରୂପ ଦୁଃଖ ଭୋଗ କରିବା ଉଚିତ । ଏହାହିଁ ଆତ୍ମବଳର ବା ସତ୍ୟାଗ୍ରହର କୁଞ୍ଚିକାଠି ।

ପାଠକ—ତାହାହେଲେ ଆପଣ ଆଇନକୁ ଖାତର କରନ୍ତି ନାହିଁ । ଏଇଟା ତ ସଫା ରାଜଦ୍ରୋହ । ଆଇନ-କାନୁନ ମାନି ଚଳିବା ଜାତି ସ୍ୱଭାବରେ ଆମେ ଗଣ୍ୟ ହୋଇ ଆସିଛୁ । ଆପଣ ତ ଏକ୍‌ସଟ୍ରିମିଷ୍ଟ ବା ଚରମପନ୍ଥୀମାନଙ୍କୁ ସୁଦ୍ଧା ବଳେଇ ଗଲାପରି ଜଣାପଡ଼ୁଛନ୍ତି । ଚରମପନ୍ଥୀମାନେ କହନ୍ତି ଯେ, ଯେଉଁ ଆଇନ ପାସ୍ ହୋଇ ସାରିଲାଣି, ତାହାକୁ ଆମେ ନିଶ୍ଚୟ ମାନିବୁଁ । ମାତ୍ର ଆଇନ ଅନିଷ୍ଟକାରୀ ହୋଇଥିଲେ, ସେ ଆଇନ ପ୍ରଣୟନକାରୀମାନଙ୍କୁ ବଳ ପ୍ରୟୋଗ କରି ସୁଦ୍ଧା ଆମେ ତଡ଼ି ଦେବୁ ।

ସମ୍ପାଦକ—ମୁଁ ସେମାନଙ୍କୁ ବଳେଇ ଯାଉଛି କି ନାହିଁ, ସେ ବାବଦରେ ଆପଣଙ୍କର ଓ ମୋର ଚିନ୍ତିତ ହେବା ଦରକାର ନାହିଁ । ଯେଉଁଟା ଭଲ, ଆମେ ତାହାକୁ ଖୋଜି କାଢ଼ିବାକୁ ଚାହୁଁ ଓ ତଦନୁସାରେ ଆଚରଣ କରିବାକୁ ଚାହୁଁ । ଆମ୍ଭେମାନେ ଆଇନ୍-କାନୁନର ବଶବର୍ତ୍ତୀ ହୋଇ ଚଳିବାର ପ୍ରକୃତ ଅର୍ଥ ହେଉଛି ଆମ୍ଭେମାନେ ସତ୍ୟାଗ୍ରହୀ । ଆଇନ ଯେତେବେଳେ ଆମର ପସନ୍ଦ ହୁଏ ନାହିଁ, ସେତେବେଳେ ଆମେ ଆଇନ ପ୍ରଣୟନକାରି-ମାନଙ୍କର ମୁଣ୍ଡ ଫଟାଉ ନାହିଁ ବରଂ ସେ ଆଇନକୁ ଅମାନ୍ୟ କରୁଁ ଏବଂ ସେଥିପାଇଁ ନିଜେ ଉପବାସ କରୁଁ ଏବଂ ନିଜେ ଦୁଃଖ ସହୁଁ । ଆଇନ ଭଲ ହେଉ ବା ମନ୍ଦ ହେଉ, ସବୁ ପ୍ରକାରର ଆଇନକୁ ଯେ ଆମର ମାନିବା ଉଚିତ, ଏ ଧାରଣା ବା ବିଶ୍ୱାସଟା ଏବେ ନୂଆ ବାହାରିଛି । ପୂର୍ବେ ଏ ପ୍ରକାରର ରୀତି ନ ଥିଲା । ଲୋକେ ଯେଉଁ ଆଇନକୁ ପସନ୍ଦ କରୁ ନ ଥିଲେ, ତାକୁ ଭାଙ୍ଗୁଥିଲେ ଓ ଦଣ୍ଡ ଭୋଗ କରୁଥିଲେ । ଆମର ବିବେକ-ବିରୋଧୀ ଆଇନକୁ ମାନିବା ଆମର ପୌରୁଷର ବାଧକ ଅଟେ । କୌଣସି ଆଇନକୁ ଆମେ ପସନ୍ଦ କରୁନଥିଲେ, ତାକୁ ମାନିବା ଧର୍ମ ଓ ମାନବିକତାର

ବିରୋଧୀ କଥା ଏବଂ ତାହାର ଅର୍ଥ ଦାସତ୍ୱ । ଯଦି ସରକାର ଆମକୁ ଲଙ୍ଗଳା ହୋଇ ବୁଲଚଲ କରିବାକୁ କହିବେ, ଆମେ ତାହା କରିବୁ କି ? ମୁଁ ସତ୍ୟାଗ୍ରହୀ ହୋଇଥିଲେ ସରକାରଙ୍କୁ କହିଦେବି ଯେ, ତାଙ୍କର ଏ ଆଇନ ତାଙ୍କ ପାଖରେ ଥାଉ, ମୁଁ ତାହା ମାନିବି ନାହିଁ । କିନ୍ତୁ ଆମେ ନିଜତ୍ୱକୁ ଏତେ ଦୂର ଭୁଲିଗଲୁଣି ଯେ ଆମର ଅସମ୍ମାନଜନକ ଯେ କୌଣସି ଆଇନକୁ ମାନିବାକୁ ଆମେ ପ୍ରସ୍ତୁତ ।

ଯେଉଁ ବ୍ୟକ୍ତି ନିଜର ମନୁଷ୍ୟତ୍ୱକୁ ଉପଲବ୍‌ଧି କରିଛି, ଯେ କେବଳ ଈଶ୍ୱରଙ୍କୁ ଭୟ କରେ, ସେ ଆଉ କାହାରିକି ଡରିବ ନାହିଁ । ମନୁଷ୍ୟ ଦ୍ୱାରା ଗଢ଼ା ହୋଇଥିବା ଆଇନରେ ସେ ବନ୍ଧା ହୋଇଯାଏ ନାହିଁ । ସରକାର ସୁଦ୍ଧା ଆମଠାରୁ ଏପରି ବଶ୍ୟତା ଆଶା କରେ ନାହିଁ । ସରକାର ଏକଥା କହେ ନାହିଁ ଯେ "ତୁମକୁ ଏହା ନିଶ୍ଚୟ କରିବାକୁ ପଡ଼ିବ ।" ସରକାର କହେ— "ତୁମେ ଏପରି ନ କଲେ, ତୁମକୁ ଦଣ୍ଡ ଦିଆଯିବ ।" ଆମେ ଏତେ ତଳକୁ ଖସିଛୁ ଯେ ଆମେ ମନେକରୁ ଯେ ଆଇନ-ପାଳନ ଆମର କର୍ତ୍ତବ୍ୟ ଓ ଆମର ଧର୍ମ ।

ଲୋକେ ଯଦି ଥରେ ଏ କଥାଟି ବୁଝିଯିବେ ଯେ ଯେଉଁ ଆଇନଟା ଅନ୍ୟାୟ ବୋଧ ହେଉଛି ସେ ଆଇନକୁ ମାନିବା ମନୁଷ୍ୟତ୍ୱ ନୁହେ । ତେବେ କାହାରି ଅତ୍ୟାଚାର ଆମକୁ ଦବେଇ ଦେଇ ପାରିବେ ନାହିଁ । ଏହା ହିଁ ସ୍ୱରାଜ୍ୟର ଚାବିକାଠି ।

ସଂଖ୍ୟାଗରିଷ୍ଠ ଲୋକଙ୍କର କାର୍ଯ୍ୟକୁ ସଂଖ୍ୟାଲଘିଷ୍ଠ ଲୋକେ ମାନିଯିବା ଉଚିତ—ଏଇଟା ଗୋଟାଏ କୁସଂସ୍କାର ଓ ଈଶ୍ୱର-ବିରୋଧୀ କଥା । ଏପରି ଅନେକ ଉଦାହରଣ ଦେଖିବାକୁ ମିଳିବ, ଯେଉଁଥିରେ ସଂଖ୍ୟାଗରିଷ୍ଠ ଲୋକ ଯାହା କହିଛନ୍ତି ତାହା ଭୁଲ

ପ୍ରମାଣିତ ହୋଇଛି ଏବଂ ସଂଖ୍ୟାଲଘିଷ୍ଠ ଲୋକଙ୍କ କଥା ହିଁ ଠିକ ହୋଇଛି । ସଂଖ୍ୟାଗରିଷ୍ଠ ଲୋକଙ୍କର ବିରୋଧ କରି ସଂଖ୍ୟାଲଘିଷ୍ଠ ଲୋକେ ନୂଆ କିଛି ପ୍ରବର୍ତ୍ତନ କରିବା ହିଁ ସବୁ ସଂସ୍କାରର ମୂଳରେ ଦେଖିବାକୁ ମିଳେ । ଯେଉଁ ଗାଁରେ ଠକମାନଙ୍କର ସଂଖ୍ୟା ବେଶୀ, ସେ ଗାଁର ବହୁ ସଂଖ୍ୟକ ଲୋକେ ଯଦି କହିବେ ଯେ ଠକ-ବିଦ୍ୟା ଶିଖିବା ଉଚିତ, ତେବେ କ'ଣ ସାଧୁ ଲୋକେ ସେ ବିଦ୍ୟା ଶିଖିବାକୁ ବାଧ ହେବେ ? ଏହା କଦାପି ହୋଇ ପାରିବ ନାହିଁ । ଯେ ପର୍ଯ୍ୟନ୍ତ ଲୋକଙ୍କ ମନରେ ଏ ଅନ୍ଧସଂସ୍କାର ରହିଥିବ ଯେ ଅନ୍ୟାୟ ଆଇନକୁ ସୁଦ୍ଧା ମାନିବା ଉଚିତ, ସେ ପର୍ଯ୍ୟନ୍ତ ଆମର ଦାସତ୍ୱ ଦୂର ହୋଇ ପାରିବ ନାହିଁ । କେବଳ ସତ୍ୟାଗ୍ରହୀ ହିଁ ଏ ଅନ୍ଧ ସଂସ୍କାରକୁ ଦୂର କରିବାକୁ ସମର୍ଥ ହେବ ।

ଅସ୍ତ୍ରବଳ ବା ପଶୁବଳ ପ୍ରୟୋଗ କରିବା ଆମର ସତ୍ୟାଗ୍ରହ-ମତର ସମ୍ପୂର୍ଣ୍ଣ ବିରୋଧୀ । ପଶୁବଳର ଅର୍ଥ ହେଲା ଆମେ ଯେଉଁ କଥାଟା ପସନ୍ଦ କରୁଛୁଁ, ତାହା ଅନ୍ୟ ଲୋକ ଦ୍ୱାରା ଜବରଦସ୍ତି କରାଇବାକୁ ଚାହିଁବା । ଏ କଥାଟା ଯଦି ଠିକ୍, ତେବେ ଆମର ପ୍ରତିପକ୍ଷ ମଧ ତାହାର ପସନ୍ଦ ମୁତାବକ ଆମଦ୍ୱାରା କାମ କରାଇ ନେବାପାଇଁ ହକଦାର ଅଟେ । ଏପରି ଯୁକ୍ତି ଫଳରେ ଆମେ କେବେ ହେଲେ ଏକମତ ହୋଇ ପାରିବୁ ନାହିଁ । ତେଲି ଘରର ବଳଦ ପରି ଆମେ ଆଖିରେ ଅନ୍ଧପୁଟଳି ବାନ୍ଧି, ଭାବୁଥିବୁଁ ଯେ ଆମେ ପ୍ରଗତି କରୁଅଛୁଁ । ଯେଉଁମାନେ ବିଶ୍ୱାସ କରନ୍ତି ଯେ ଯେଉଁ ଆଇନକୁ ସେମାନେ ପସନ୍ଦ କରନ୍ତି ନାହିଁ ସେ ଆଇନକୁ ସେମାନେ ମାନିବାକୁ ବାଧ ନୁହନ୍ତି । ସତ୍ୟାଗ୍ରହକୁ ନିଜର ପନ୍ଥା ରୂପେ ଗ୍ରହଣ କରିବା ବ୍ୟତୀତ ସେମାନଙ୍କର ଅନ୍ୟ ପନ୍ଥା ନାହିଁ । ଅନ୍ୟ ଯେଉଁ ପନ୍ଥା ସେମାନେ ଗ୍ରହଣ କରିବେ, ତାହାର ପରିଣାମ ସର୍ବନାଶ ହେବ ।

ପାଠକ— ଆପଣଙ୍କ କଥାରୁ ମନେ ହେଉଛି ଯେ ସତ୍ୟାଗ୍ରହ ଦୁର୍ବଳ ଲୋକଙ୍କ ପାଇଁ ଗୋଟାଏ ଭଲ ଅସ୍ତ୍ର, ମାତ୍ର ଏହି ଦୁର୍ବଳ ଲୋକେ ଯେତେବେଳେ ସବଳ ହୋଇଯିବେ, ସେତେବେଳେ ସେ ଅସ୍ତ୍ରଶସ୍ତ୍ର ବ୍ୟବହାର କରିବା ସେମାନଙ୍କ ପକ୍ଷରେ ଠିକ୍ ହେବ ।

ସମ୍ପାଦକ—ଆପଣଙ୍କ କଥାରୁ ତ ଘୋର ଅଜ୍ଞତାର ପରିଚୟ ମିଳୁଛି । ସତ୍ୟାଗ୍ରହ ବା ଆତ୍ମବଳ ଅତୁଳନୀୟ ଅଟେ । ଏହା ଅସ୍ତ୍ରବଳଠାରୁ ବେଶୀ କାମ ଦିଏ । ତାହାହେଲେ ସତ୍ୟାଗ୍ରହକୁ ଦୁର୍ବଳର ଅସ୍ତ୍ର କୁହାଯିବ କିପରି ? ସତ୍ୟାଗ୍ରହ ପାଇଁ ଯେଉଁ ସାହସ ଦରକାର, ଅସ୍ତ୍ରବଳର ଆଶ୍ରୟ ନେଇଥିବା ଲୋକଠାରେ ସେ ସାହସ ଆଦୌ ନ ଥାଏ । ଭୀରୁ ଓ ଦୁର୍ବଳ ଲୋକେ ଯେଉଁ ଆଇନକୁ ନାପସନ୍ଦ କରନ୍ତି, ସେ ଆଇନକୁ ସେମାନେ ଅମାନ୍ୟ କରି ପାରିବେ ବୋଲି ଆପଣ ବିଶ୍ୱାସ କରୁଛନ୍ତି କି ? ଚରମପନ୍ଥୀମାନେ ଅସ୍ତ୍ରବଳର ସମର୍ଥକ । ସେମାନେ ଆଇନକୁ ମାନିବା କଥା କହୁଛନ୍ତି କାହିଁକି ? ମୁଁ ସେମାନଙ୍କୁ ଦୋଷ ଦେଉ ନାହିଁ । ଏହା ଛଡ଼ା ଅନ୍ୟ କୌଣସି କଥା କହିବା ସେମାନଙ୍କ ପକ୍ଷରେ ମୂଳରୁ ସମ୍ଭବ ନୁହେଁ । ସେମାନେ ଯେତେବେଳେ ଇଂରେଜଙ୍କୁ ତଡ଼ିଦେଇ ଏ ଦେଶ ଶାସନ କରିବେ, ସେତେବେଳେ ମୁଁ ଓ ଆପଣ ସେମାନଙ୍କର ଆଇନ୍‌କୁ ମାନୁ ବୋଲି ସେମାନେ ଚାହିଁବେ । ସେମାନେ ଯେଉଁ ପନ୍ଥା ଧରିଛନ୍ତି, ସେଥିପାଇଁ ସେମାନଙ୍କ କଥା ଠିକ୍ । ମାତ୍ର ସତ୍ୟାଗ୍ରହୀ କହିବ ଯେ ତାକୁ ତୋପ-ମୁହଁରେ ଉଡ଼ାଇଦେଲେ ସୁଦ୍ଧା ସେ ନାପସନ୍ଦ କରୁଥିବା ଆଇନକୁ କଦାପି ମାନିବେ ନାହିଁ ।

ଆପଣଙ୍କ ମତରେ କେଉଁଟି ଅଧିକ ସାହସିକ କାର୍ଯ୍ୟ ? ତୋପ ପଛେଇ କରି ଶହ ଶହ ଲୋକଙ୍କୁ ମାରିଦେବା ପାଇଁ ବେଶୀ ସାହସ ଦରକାର ? ନା, ହସି ହସି ନିଜକୁ ତୋପ ମୁହଁରେ

ଉଡ଼େଇ ଦେବାରେ ବେଶୀ ସାହସ ଦରକାର ? ମୃତ୍ୟୁକୁ ଯେ ନିଜର ପ୍ରିୟ ସଖା ମଣେ, ସେ ପ୍ରକୃତ ବୀର ? ନା, ଯେ ଅନ୍ୟମାନଙ୍କ ମୃତ୍ୟୁକୁ ନିଜର ହାତମୁଠାରେ ରଖିଥାଏ, ସେ ବୀର ? ଆପଣ ନିଶ୍ଚିତରୂପେ ଜାଣି ରଖନ୍ତୁ ଯେ ସାହସହୀନ ଓ ପୁରୁଷତ୍ୱଶୂନ୍ୟ ଲୋକ କେବେହେଁ ସତ୍ୟାଗ୍ରହୀ ହୋଇ ପାରିବ ନାହିଁ ।

ଏକଥା ଠିକ୍ ଯେ ଯେଉଁ ଲୋକ ଶାରୀରିକ ବଳରେ ଦୁର୍ବଳ, ସେ ମଧ୍ୟ ସତ୍ୟାଗ୍ରହୀ ହୋଇ ପାରିବ । ଲକ୍ଷ ଲକ୍ଷ ଲୋକ ଏକାଠି ହୋଇ ଯେପରି ସତ୍ୟାଗ୍ରହ କରି ପାରନ୍ତି, ସେହିପରି ଜଣେ ଲୋକ ଏକାକୀ ମଧ୍ୟ ସତ୍ୟାଗ୍ରହ କରିବାକୁ ସମର୍ଥ ହୋଇଥାଏ । ପୁରୁଷ ଓ ନାରୀ ଉଭୟେ ସତ୍ୟାଗ୍ରହରୁ ଆନନ୍ଦ ପାଇ ପାରନ୍ତି । ସତ୍ୟାଗ୍ରହ ପାଇଁ ସାମରିକ ଶିକ୍ଷା ଦେବାକୁ ପଡ଼େନାହିଁ । ଏଥିପାଇଁ କୁସ୍ତି ବା ଜୁଜୁତ୍ସୁ ଶିଖିବା ମଧ୍ୟ ଲୋଡ଼ାନାହିଁ । କେବଳ ନିଜ ମନକୁ ଆୟତ୍ତରେ ରଖି ପାରିଲେ, ସତ୍ୟାଗ୍ରହୀ ପଶୁରାଜ ସିଂହ ପରି ଗର୍ଜନ କରିପାରେ ଓ ତାହାର ବାଣୀ ଶତ୍ରୁର ଆସ୍ପର୍ଦ୍ଧାକୁ ମ୍ଳାନ କରି ଦେଇପାରେ ।

ସତ୍ୟାଗ୍ରହରୂପୀ ତରବାରିର ଦୁଇ ପାଖରେ ଧାର ଥାଏ । ତାକୁ ଯେ କୌଣସି ପ୍ରକାରେ କାମରେ ଲଗେଇ ହେବ । ସେ ତରବାରିକୁ ଯେ ବ୍ୟବହାର କରେ ଓ ଯାହା ଉପରେ ତାହା ବ୍ୟବହୃତ ହୁଏ, ଉଭୟେ ସେ ତରବାରି ଦ୍ୱାରା ସୁଖୀ ହୁଅନ୍ତି । ଟୋପାଏ ସୁଦ୍ଧା ରକ୍ତପାତ ନ କରି ଏହା ସୁଦୂର-ପ୍ରସାରୀ ଫଳ ଦିଏ । ସେଥିରେ କଳଙ୍କି ଲାଗେ ନାହିଁ । ତାକୁ କେହି ଚୋରାଇ ନେଇ ପାରେନାହିଁ । ସତ୍ୟାଗ୍ରହୀମାନଙ୍କ ମଧ୍ୟରେ ପ୍ରତିଯୋଗିତା ହୁଏ ନାହିଁ । ସତ୍ୟାଗ୍ରହୀ କେବେହେଁ କ୍ଳାନ୍ତି ଅନୁଭବ କରେ ନାହିଁ ।

ସତ୍ୟାଗ୍ରହୀର ତରବାରୀ ପାଇଁ ଖାପ ଲୋଡ଼ା ହୁଏ ନାହିଁ । ସେହି ତରବାରୀକୁ କେହି ଛଡ଼େଇ ନେଇ ପାରେନାହିଁ । ତଥାପି, ଏହାକୁ ଆପଣ ଦୁର୍ବଳର ଅସ୍ତ୍ର କହିବାଟା ପ୍ରକୃତରେ ଅଦ୍ଭୁତ ଅଟେ ।

ପାଠକ—ଆପଣ କହିଲେ ଯେ, ସତ୍ୟାଗ୍ରହ ଭାରତବର୍ଷର ବିଶେଷ ଅସ୍ତ୍ର । ଭାରତରେ କଅଣ ତୋପ-ବନ୍ଧୁକ କେବେହେଁ ବ୍ୟବହୃତ ହୋଇ ନାହିଁ ?

ସମ୍ପାଦକ—ଭାରତବର୍ଷ ବୋଇଲେ ଆପଣ ସ୍ପଷ୍ଟତଃ ମୁଷ୍ଟିମେୟ ରାଜା-ମହାରାଜାଙ୍କୁ ବୁଝୁଛନ୍ତି । ଯେଉଁ କୋଟି କୋଟି ଲୋକ ଉପରେ ରାଜା-ମହାରାଜାମାନଙ୍କର ଓ ଆମ୍ଭମାନଙ୍କର ଅସ୍ତିତ୍ୱ ନିର୍ଭର କରେ, ଭାରତ କହିଲେ, ମୁଁ ସେହି କୋଟି କୋଟି ଲୋକଙ୍କୁ ବୁଝେଁ ।

ରାଜାମାନେ ତ ଅସ୍ତ୍ରଶସ୍ତ୍ର ନିଶ୍ଚୟ ବ୍ୟବହାର କରିବେ । ସେଇଟା ସେମାନଙ୍କର ଚଳଣି ହୋଇଗଲାଣି । ସେମାନେ ହୁକୁମ ଦେବାକୁ ଚାହାନ୍ତି କିନ୍ତୁ ହୁକୁମ ମାନିବା ଲୋକଙ୍କର ତୋପ-ବନ୍ଧୁକ ଦରକାର ହୁଏ ନାହିଁ । ପୃଥିବୀର ଅଧିକ ସଂଖ୍ୟକ ଲୋକ ହେଉଛନ୍ତି ହୁକୁମ ମାନିବା ଲୋକ । ସେମାନଙ୍କୁ ଶରୀରବଳ ବା ଆତ୍ମବଳ ଦୁଇଟିରୁ ଗୋଟିଏ ଶିଖିବାକୁ ହେବ । ଯେଉଁଠି ସେମାନେ ଶରୀରବଳ ଶିଖନ୍ତି, ସେଠାରେ ରାଜା, ପ୍ରଜା ଉଭୟେ ପାଗଳ ପରି ହୋଇ ଯାଆନ୍ତି । ଯେଉଁଠି ହୁକୁମ ମାନିବା ଲୋକେ ସତ୍ୟାଗ୍ରହ ବା ଆତ୍ମବଳ ଶିଖିଥାଆନ୍ତି, ସେଠାରେ ରାଜାଙ୍କ ଆଦେଶ ତାଙ୍କର ଖଣ୍ଡାମୁନ ଯାଏ ସୀମାବଦ୍ଧ ହୋଇ ରହେ । କାରଣ, ହୁକୁମ ମାନିବା ଲୋକ ଅନ୍ୟାୟ ହୁକୁମକୁ ପରବାଏ କରନ୍ତି ନାହିଁ । ଚାଷୀକୁଳ କେବେହେଁ କାହାରି ଅସ୍ତ୍ରବଳର ଅଧୀନ ହୋଇନାହିଁ କମ୍ବା

ହେବ ନାହିଁ । ସେ ଖଣ୍ଡା ଧରି ଜାଣେ ନାହିଁ କମ୍ବା କାହାରି ଖଣ୍ଡାକୁ ଡରେ ନାହିଁ । ଯେଉଁ ବ୍ୟକ୍ତି ମୃତ୍ୟୁକୁ ତାହାର ମୁଣ୍ଡ ତଳର ତକିଆ ପରି ମଣେ, ସେହି ବ୍ୟକ୍ତି ମହାନ୍ । ଯେ ମୃତ୍ୟୁ-ଭୟ ଛାଡ଼ିଛି, ସେ ସବୁ ଭୟରୁ ମୁକ୍ତ ହୋଇ ସାରିଛି । ମୁଁ ଯେ ଏଠାରେ ଟିକିଏ ଅତିରଞ୍ଜିତ କରି କହୁଛି ସେ କଥା ଠିକ୍ । ମାତ୍ର ଯେଉଁମାନେ ତରବାରିର ବଳ ଦେଖି ବିସ୍ମୟ, ଚକିତ ହୋଇ ଯାଇଛନ୍ତି, ସେମାନଙ୍କ ପାଇଁ ଏଇଟା ଅତିରଞ୍ଜନ ନୁହେଁ । ପ୍ରକୃତରେ ଭାରତବର୍ଷର ସାଧାରଣ ଲୋକେ ଜୀବନର ସବୁ କ୍ଷେତ୍ରରେ ସତ୍ୟାଗ୍ରହ ବା ଆତ୍ମବଳ ପ୍ରୟୋଗ କରି ଆସିଛନ୍ତି । ଏ ଦେଶର ଶାସକମାନେ ଯେତେବେଳେ ପ୍ରଜାଙ୍କୁ ଅସନ୍ତୁଷ୍ଟ କରନ୍ତି, ସେତେବେଳେ ପ୍ରଜା ଶାସକଙ୍କ ସହିତ ସହଯୋଗ କରନ୍ତି ନାହିଁ । ଏହା ହିଁ ସତ୍ୟାଗ୍ରହ ।

ମୋର ମନେ ଅଛି, ଥରେ ଗୋଟିଏ ଗଡ଼ଜାତର ପ୍ରଜାମାନେ ରାଜାଙ୍କର ଗୋଟିଏ ହୁକୁମନାମା ହେତୁରୁ ଅପମାନିତ ବୋଧ କଲେ । ସେମାନେ ଗାଁ ଛାଡ଼ି ଚାଲିଯିବାକୁ ଆରମ୍ଭ କଲେ । ଫଳରେ, ରାଜା ଚିନ୍ତିଆ ହୋଇ ପଡ଼ିଲେ । ସେ ପ୍ରଜାଙ୍କୁ କ୍ଷମା ମାଗିଲେ ଓ ତାଙ୍କ ଆଦେଶ ପ୍ରତ୍ୟାହାର କଲେ । ଏପରି ଅନେକ ଦୃଷ୍ଟାନ୍ତ ଭାରତବର୍ଷରେ ମିଳିବ । ଯେଉଁଠି ଆତ୍ମବଳ ବା ସତ୍ୟାଗ୍ରହ ହିଁ ପ୍ରଜାଙ୍କର ପଥ-ପ୍ରଦର୍ଶକ ଶକ୍ତି ହୋଇଥାଏ, ସେହିଠାରେ ପ୍ରକୃତ ସ୍ୱରାଜ୍ୟ ସମ୍ଭବପର । ଅନ୍ୟ ଶାସନ ହେଉଛି ବିଦେଶୀ ଶାସନ ।

ପାଠକ—ତାହାହେଲେ ଆପଣଙ୍କ ମତରେ ଏ ଦେହକୁ ତାଲିମ ଦେବା ବା ମଜବୁତ୍ କରିବା କିଛି ଦରକାର ନାହିଁ ।

ସମ୍ପାଦକ—ଏ କଥା ମୁଁ କେବେହେଁ କହିବି ନାହିଁ । ଦେହକୁ ତାଲିମ ନ ଦେଲେ ଓ ମଜ୍‌ବୁତ୍ ନ କଲେ, ସତ୍ୟାଗ୍ରହୀ

ହେବା କଠିନ ହେବ । ଯେଉଁ ଦେହର ଅନ୍ତରଙ୍ଗ ଯନ୍ତ୍ର ନେଇ କମ୍ପା ଆଉଁଶି ଘଷି ତାକୁ ଦୁର୍ବଳ କରି ଦିଆଯାଏ, ସେ ଦେହରେ ରହୁଥିବା ମନ ମଧ୍ୟ ଦୁର୍ବଳ ହୋଇଯାଏ । ଯେଉଁଠାରେ ମନୋବଳ ନାହିଁ, ସେଠାରେ ଆତ୍ମବଳ ଆସିବ କପରି ? ଆମକୁ ବାଲ୍ୟବିବାହ ଆଦି କୁପ୍ରଥା ଓ ଭୋଗବିଳାସପୂର୍ଣ୍ଣ ଜୀବନ ଛାଡ଼ି, ଦେହକୁ ଟାଣୁଆ କରିବାକୁ ହେବ । ମୁଁ ଯଦି କୌଣସି ଦୁର୍ବଳ ଲୋକକୁ ତୋପ-ମୁହଁରେ ଛିଡ଼ା ହୋଇ ଯିବାକୁ କହିବି, ତେବେ ମୁଁ ନିଜେ ପରିହାସର ପାତ୍ର ହେବି ।

ପାଠକ—ଆପଣଙ୍କ କଥାରୁ ଜଣାପଡ଼ୁଛି ଯେ, ସତ୍ୟାଗ୍ରହୀ ହେବା କିଛି ସାଧାରଣ କଥା ନୁହେଁ । ତାହାହେଲେ ଯେ କୌଣସି ସାଧାରଣ ଲୋକ କପରି ସତ୍ୟାଗ୍ରହୀ ହୋଇ ପାରିବ, ତାହା ଆପଣ ବୁଝାଇ ଦିଅନ୍ତୁ ।

ସମ୍ପାଦକ—ସତ୍ୟାଗ୍ରହୀ ହେବା ଯେତିକି ସହଜ, ପୁଣି ସେତିକି କଷ୍ଟକର ମଧ୍ୟ । ଚଉଦ ବର୍ଷର ପୁଅ ସତ୍ୟାଗ୍ରହୀ ହୋଇଥିବା ମୁଁ ଆଖିରେ ଦେଖିଛି । ରୁଗ୍ଣ ଲୋକେ ମଧ୍ୟ ସତ୍ୟାଗ୍ରହୀ ହୋଇଥିବା ମୁଁ ଦେଖିଛି । ପୁଣି ଯେଉଁମାନଙ୍କର ଖୁବ୍ ଦୈହିକ ବଳ ଥିଲା, ଏବଂ ଅନ୍ୟଥା ସେମାନେ ନାନାପ୍ରକାରର ସୁଖ ଭୋଗ କରୁଥିଲେ, ସେମାନେ କପରି ସତ୍ୟାଗ୍ରହୀ ହୋଇ ପାରିଲେ ନାହିଁ, ସେ କଥା ମଧ୍ୟ ମୁଁ ଦେଖିଛି । ଅଭିଜ୍ଞତାରୁ ମୁଁ ଉପଲବ୍ଧି କରିଛି ଯେ, ଯେଉଁ ଲୋକ ଦେଶସେବା ଉଦ୍ଦେଶ୍ୟରେ ସତ୍ୟାଗ୍ରହୀ ହେବାକୁ ଚାହେଁ, ତାହାର ବ୍ରହ୍ମଚର୍ଯ୍ୟ ପାଳନ କରିବା ଉଚିତ, ଦାରିଦ୍ର୍ୟ ବରଣ କରିବା ଉଚିତ ଏବଂ ସତ୍ୟପଥ ଅନୁସରଣ କରିବା ସଙ୍ଗେ ସଙ୍ଗେ ନିର୍ଭୟତା ଅନୁଶୀଳନ କରିବା ଦରକାର ।

ବ୍ରହ୍ମଚର୍ଯ୍ୟ ଗୋଟିଏ ମହା-ବ୍ରତ । ଏହା ବିନା ମନ ଦୃଢ଼ ହୋଇ ପାରେ ନାହିଁ । ବ୍ରହ୍ମଚର୍ଯ୍ୟ ପାଳନ ନ କଲେ ମଣିଷ ପ୍ରାଣଶକ୍ତି ହରାଏ, ନିର୍ବୀର୍ଯ୍ୟ ଓ ଭୀରୁ ହୋଇଯାଏ । ଯାହାର ମନ ବିଷୟ-ବାସନାରେ ବୁଡ଼ି ରହେ, ସେ ଜୀବନରେ କି ପରାକ୍ରମ ଦେଖାଇ ପାରିବ ? ଅସଂଖ୍ୟ ଉଦାହରଣ ଦେଇ ମୁଁ ମୋର ଏ ଯୁକ୍ତିକୁ ପ୍ରତିପାଦିତ କରିପାରିବି । ଏଥିରୁ ପ୍ରଶ୍ନ ଉଠେ ଯେ ବିବାହିତ ଲୋକେ ତାହାହେଲେ କ'ଣ କରିବେ ? ମାତ୍ର ଏ ପ୍ରଶ୍ନ ଉଠେଇବା କିଛି ଦରକାର ନାହିଁ । ସ୍ୱାମୀ-ସ୍ତ୍ରୀ ଇନ୍ଦ୍ରିୟ ସମ୍ଭୋଗ କରିବାବେଳେ ତାହାକୁ ପାଶବିକ ସମ୍ଭୋଗ ଛଡ଼ା ଆଉ କଅଣ କୁହାଯିବ ?

କେବଳ ବଂଶ-ରକ୍ଷା ପାଇଁ ସନ୍ତାନ ଉତ୍ପାଦନ କରିବା ବ୍ୟତୀତ ଶାସ୍ତ୍ରରେ ଏ ସମ୍ଭୋଗ ନିଷିଦ୍ଧ ଅଟେ । କିନ୍ତୁ ସତ୍ୟାଗ୍ରହୀର ସନ୍ତାନ ଉତ୍ପାଦନ କରିବା ପାଇଁ ମୂଳରୁ ଆକାଂକ୍ଷା ରହିବା ଉଚିତ ନୁହେଁ । ସେଥିପାଇଁ ଏହି ସୀମିତ ସମ୍ଭୋଗ ମଧ୍ୟ ତାହା ପକ୍ଷରେ ବାରଣ କରାଯାଇଛି । ସେ ବିବାହ କରି ସୁଦ୍ଧା, ପୂର୍ଣ୍ଣ ବ୍ରହ୍ମଚର୍ଯ୍ୟ ପାଳନ କରିପାରେ । ଏ କଥା ବେଶୀ ଲମ୍ବାଇ ଆଲୋଚନା କରିବା କିଛି ଦରକାର ନାହିଁ । ଏ ସମ୍ପର୍କରେ କେତୋଟି ପ୍ରଶ୍ନ ଉଠିଥାଏ । ନିଜର ସହଧର୍ମିଣୀଙ୍କୁ କପରି ସଙ୍ଗରେ ନେବାକୁ ପଡ଼ିବ ? ତାଙ୍କର ଅଧିକାର କ'ଣ ? ଆଦି ବିଷୟର ମନରେ ଉଠେ । ତଥାପି ଯେଉଁ ଲୋକ କୌଣସି ମହାନ୍ କାମରେ ଅଂଶ ଗ୍ରହଣ କରିବାକୁ ଇଚ୍ଛା କରେ, ତାକୁ ଏ ସମସ୍ୟାର ସାମାଧାନ କରିବାକୁ ପଡ଼େ ।

ବ୍ରହ୍ମଚର୍ଯ୍ୟ ପାଳନ କରିବାର ଯେପରି ଆବଶ୍ୟକତା ଅଛି, ସେହିପରି ଦାରିଦ୍ର୍ୟ ବରଣ କରିବା ମଧ୍ୟ ସତ୍ୟାଗ୍ରହୀ ପାଇଁ ଏକାନ୍ତ

ଆବଶ୍ୟକ । ପଇସାର ଲୋଭ ଓ ସତ୍ୟାଗ୍ରହ ଏକାଠି ଚାଲି ପାରିବ ନାହିଁ । ଏହାର ଅର୍ଥ ନୁହେଁ ଯେ ଯାହାପାଖରେ ଟଙ୍କା ପଇସା ଅଛି, ସେ ତାକୁ ଫିଙ୍ଗି ଦେବ । ତାକୁ ପଇସା ପ୍ରତି ଅନାସକ୍ତ ହେବାକୁ ପଡ଼ିବ । ସତ୍ୟାଗ୍ରହ ପାଳନ କରିବାକୁ ଯାଇ ଯଦି ତାକୁ ସବୁ ଟଙ୍କା-ପଇସା ହରାଇବାକୁ ପଡ଼ିବ, ତେବେ ସେଥିପାଇଁ ସେ ପ୍ରସ୍ତୁତ ରହିବ ।

ଆମର ଆଲୋଚନା ଭିତରେ ସତ୍ୟାଗ୍ରହକୁ ସତ୍ୟ-ବଳ ବୋଲି ବର୍ଣ୍ଣନା କରାଯାଇଛି । ଯେ ସତ୍ୟ ପାଳନ କରେ ନାହିଁ, ସେ କିପରି ସତ୍ୟର ବଳକୁ ପ୍ରକଟ କରି ପାରିବ ? ସେଥିପାଇଁ ସତ୍ୟାଗ୍ରହୀକୁ ପୂର୍ଣ୍ଣରୂପେ ସତ୍ୟାନୁସରଣ କରିବାକୁ ପଡ଼ିବ । ଯେତେ କ୍ଷତ୍ୟକ୍ଷତ ହେଲେ ସୁଦ୍ଧା ସେ ସତ୍ୟକୁ ଛାଡ଼ି ପାରିବ ନାହିଁ । ସତ୍ୟପାଇଁ କିଛି ଲୁଚେଇବାକୁ ପଡ଼େ ନାହିଁ । ସେଥିପାଇଁ ସତ୍ୟାଗ୍ରହୀର ଲୁଚେଇଛପେଇ ସୈନ୍ୟ ସଂଗଠନ କରିବା ଆବଶ୍ୟକ ହୁଏ ନାହିଁ । ପ୍ରାଣରକ୍ଷା କରିବା ଦୃଷ୍ଟିରୁ ମିଛ କହିବା ଉଚିତ କି ଅନୁଚିତ, ଏ ପ୍ରଶ୍ନ ଆଦୌ ମନକୁ ଆସିବା ଅନାବଶ୍ୟକ । ଯେଉଁ ଲୋକ ମିଥ୍ୟାକୁ ସମର୍ଥନ କରେ, ସେହି ଲୋକ ଏ ପ୍ରକାରର ନିକମା ପ୍ରଶ୍ନ ଉଠାଏ । ଯେ ସତ୍ୟପଥ ଅବଲମ୍ବନ କରିବାକୁ ଚାହେଁ, ତା ଆଗରେ ଏ ପ୍ରକାର ଧର୍ମ-ସଂକଟ ବା କର୍ତ୍ତବ୍ୟ ସଂକଟ ମୂଳରୁ ଦେଖା ଦିଏ ନାହିଁ । ଯଦିଚ : କେବେ କେମିତି ସତ୍ୟାଗ୍ରହୀ ଏପରି ଅଡୁଆ ପରିସ୍ଥିତିରେ ପଡ଼ିଥାଏ, ତଥାପି ସେଥିରୁ ସେ ଆପେ ଆପେ ଉଧୁରି ଯାଏ ।

ନିର୍ଭୟତା ବିନା ତ ସତ୍ୟାଗ୍ରହୀ ପାଦେ ସୁଦ୍ଧା ଆଗେଇ ପାରିବ ନାହିଁ । ଏ ନିର୍ଭୟତା ସର୍ବପ୍ରକାରେ ଓ ସବୁ କ୍ଷେତ୍ରରେ ଥିବା ଦରକାର । ଧନ-ସଂପଦ, ମିଥ୍ୟା ପ୍ରତିଷ୍ଠା, ଆତ୍ମୀୟ-ସ୍ୱଜନ,

ରାଜ-ଦରବାରରେ ସମ୍ମାନ ଆଦି ହରାଇବାର ଭୟରୁ ଏବଂ ଶାରୀରିକ କ୍ଳେଶ ଓ ମୃତ୍ୟୁ-ଭୟରୁ ସତ୍ୟାଗ୍ରହୀ ମୁକ୍ତ ରହିବା ଉଚିତ ।

ଏ ନିୟମଗୁଡ଼ିକ ପାଳନ କରିବା ବଡ଼ କଠିନ କହି ଏଗୁଡ଼ିକୁ ଛାଡ଼ି ଦେବା ଉଚିତ ନୁହେଁ । ମୁଣ୍ଡ ଉପରେ ଯେଉଁ ବୋଝ ଆସି ପଡ଼େ, ତାକୁ ମୁଣ୍ଡାଇବାକୁ ଶକ୍ତି ପ୍ରକୃତି ପ୍ରତ୍ୟେକ ମଣିଷକୁ ଦେଇଛି । ଯେଉଁମାନେ ଦେଶ-ସେବା କରିବାକୁ ବାହାରି ନାହାନ୍ତି, ଏହି ଗୁଣଗୁଡ଼ିକର ଅଧିକାରୀ ହେବା ସେମାନଙ୍କର ମଧ୍ୟ ଉଚିତ । ପୁଣି ଏତିକ ମଧ୍ୟ ବୁଝି ରଖିବା ଦରକାର ଯେ, ଯେଉଁମାନେ ଅସ୍ତ୍ର-ବଳର ଆଶ୍ରୟ ନେବେ, ସେମାନଙ୍କଠାରେ ମଧ୍ୟ ଏହି ଗୁଣଗୁଡିକ ରହିବା ଦରକାର । ଯୋଦ୍ଧା ହେବା ଏପରି ସହଜ କଥା ନୁହେଁ ଯେ, କେହି ଇଚ୍ଛା କରିବା ମାତ୍ରେ ସାଙ୍ଗେ ସାଙ୍ଗେ ଯୋଦ୍ଧା ପାଲଟିଯିବ । ଯୋଦ୍ଧାକୁ ବ୍ରହ୍ମଚର୍ଯ୍ୟ ପାଳନ କରିବାକୁ ପଡ଼ିବ ଓ ଦାରିଦ୍ର୍ୟ ବରଣ କରିବାକୁ ହେବ । ହିଂସା-ଯୁଦ୍ଧରେ ସୁଦ୍ଧା ଯେଉଁମାନଙ୍କଠାରେ ନିର୍ଭୟତା ନ ଥାଏ, ସେମାନେ ଯୁଦ୍ଧ କରି ପାରନ୍ତି ନାହିଁ । କେହି କେହି ଭାବୁଥିବେ ଯେ ହିଂସା-ଯୁଦ୍ଧରେ ଲଢ଼ିବା ଲୋକର ନିଷ୍ଠାପର ଭାବରେ ସତ୍ୟବ୍ରତ ପାଳନ କରିବା ସେତେ ଦରକାର ନାହିଁ । ମାତ୍ର ଯେଉଁଠି ନିର୍ଭୟତା ଥାଏ, ସେଠାରେ ସତ୍ୟ ସ୍ୱତଃ ଆସିଯାଏ । ମଣିଷ ଯେତେବେଳେ ସତ୍ୟକୁ ଛାଡ଼େ, ସେତେବେଳେ କୌଣସି ଆକାରରେ ବା ପ୍ରକାରରେ ତାହାଠାରେ ଭୟସଞ୍ଚାର ହେଉଛି, ସେ ସତ୍ୟକୁ ଛାଡ଼େ । ସେଥିପାଇଁ ଏ ଗୁଡ଼ିକ ଗୁଣ ପାଳନ କରିବାକୁ ଡରିବା ଅନୁଚିତ ଅଟେ । ହିଂସା-ଯୁଦ୍ଧ ଲଢ଼ିବା ଲୋକକୁ ଅଯଥାରେ ଆଉ ଅନେକଗୁଡ଼ିଏ ସାଧନା କରିବାକୁ ପଡ଼େ । ସେଗୁଡ଼ାକ ସତ୍ୟାଗ୍ରହୀ ପାଇଁ ଆବଶ୍ୟକ ହୁଏ ନାହିଁ ।

ନିର୍ଭୟତାର ଅଭାବରୁ ତାକୁ ସେଗୁଡ଼ାକ ସାଧିବାକୁ ପଡ଼େ । ସେ ଯଦି ପୂରାପୂରି ନିର୍ଭୀକ ହୋଇପାରେ, ତେବେ ନିର୍ଭୀକ ହେବା ମାତ୍ରକେ ତାହା ହାତରୁ ଅସ୍ତ୍ର ଖସି ପଡ଼ିବ । ସେ ଆଉ ଅସ୍ତ୍ରର ସାହାଯ୍ୟ ଲୋଡ଼ିବ ନାହିଁ । କାହାର ସହିତ ଯାହାର ଶତ୍ରୁତା ନାହିଁ, କାହାର ପ୍ରତି ଘୃଣା ନାହିଁ, ତାହାର ଅସ୍ତ୍ର ଆଦୌ ଦରକାର ନାହିଁ । ଜଣେ ଲୋକ ହାତରେ ଠେଙ୍ଗା ଥିଲା । ସେ ସିଂହ ହାବୁଡ଼ରେ ପଡ଼ିଗଲା । ସେ ଅଜାଣତରେ ସ୍ୱତଃ ଠେଙ୍ଗା ଉଞ୍ଚାଇଲା । ଏବେ ସେ ଲୋକ ବୁଝି ପାରିଲା ଯେ ସେ ଠେଙ୍ଗା ଉପରେ ଭରସା ରଖି ଏ ପର୍ଯ୍ୟନ୍ତ ଖାଲି ଭୁଚ୍ଛା ମୁହଁରେ ନିର୍ଭୟତାର କଥା କହୁଥିଲା । ସେହି ମୁହୂର୍ତ୍ତରେ ସେ ଠେଙ୍ଗାକୁ ଫିଙ୍ଗିଦେଲା ଏବଂ ଦେଖିଲା ଯେ ସେ ସବୁ ଭୟରୁ ମୁକ୍ତ ହୋଇଯାଇଛି ।

## ଶିକ୍ଷା

ପାଠକ – ଆପଣ ଯେତେ ଯେତେ କଥା କହିଲେ, ସେଥିରେ ଶିକ୍ଷାର ଆବଶ୍ୟକତା ସମ୍ବନ୍ଧରେ ତ କାହିଁ ପଦେ ହେଲେ କହିଲେ ନାହିଁ । ଆମ ଦେଶରେ ଶିକ୍ଷାର ଅଭାବ ବିଷୟରେ ଆମେ ବରାବର ଅଭିଯୋଗ କରିଆସିଛୁଁ । ଅନିବାର୍ଯ୍ୟ ବା ବାଧ୍ୟତାମୂଳକ ଶିକ୍ଷାର ବ୍ୟବସ୍ଥା ପାଇଁ ଦେଶସାରା ଆନ୍ଦୋଳନ ଚାଲିଥିବା ଆମେ ଦେଖୁଛୁଁ । ବଡ଼ୋଦାର ମହାରାଜା ( ଗେକୋବାଡ଼ ) ତାଙ୍କ ରାଜ୍ୟରେ ବାଧ୍ୟତାମୂଳକ ଶିକ୍ଷାର ପ୍ରଚଳନ କଲେଣି । ସେଥିପ୍ରତି ସମସ୍ତଙ୍କ ଦୃଷ୍ଟି ଆକର୍ଷିତ ହୋଇଛି । ଆମେ ସେଥିପାଇଁ ତାଙ୍କୁ ଧନ୍ୟବାଦ ଦେଉଛୁଁ । ଏ ସବୁ ଉଦ୍ୟମକୁ କଅଣ ଅକାରଣ ବୋଲିବାକୁ ହେବ ?

ସଂପାଦକ—ଆମେ ଯଦି ଆମ ସଭ୍ୟତାକୁ ଶ୍ରେଷ୍ଠ ସଭ୍ୟତା ବୋଲି ମନେ କରୁଥିବୁଁ, ତେବେ ମୋତେ ଦୁଃଖର ସହିତ କହିବାକୁ ପଡ଼ିବ ଯେ, ଏ ଉଦ୍ୟମ ଅଧିକାଂଶ ଅନାବଶ୍ୟକ ବା ଅକାରଣ ଅଟେ । ଏ ବିଗରେ ମହାରାଜା ସାହେବଙ୍କର ଓ ଆମର ଆଉ ଅନେକ ଧୁରନ୍ଧର ନେତାମାନଙ୍କର ଉଦ୍ଦେଶ୍ୟ ନିର୍ମଳ ଏବଂ ସେଥିପାଇଁ ସେମାନଙ୍କୁ ଧନ୍ୟବାଦ ଦେବା ଆମର ଉଚିତ । କିନ୍ତୁ ସେମାନଙ୍କ ଉଦ୍ୟମର ଯେଉଁ ପରିଣତି ଘଟିବ, ଆମେ ତାକୁ ଲୁଚାଇ ପାରିବୁଁ ନାହିଁ ।

ଶିକ୍ଷାର ଅର୍ଥ କଅଣ ? ଏହା ସରଳଭାବରେ ଅକ୍ଷର-ଜ୍ଞାନକୁ ବୁଝାଏ । ଏହା କେବଳ ଏକ ସାଧନ, ଏକ ଯନ୍ତ୍ର । ଆମେ କୌଣସି ସାଧନର ସଦ୍‌ବ୍ୟବହାର କରିପାରୁଁ କିମ୍ବା ମନ୍ଦ ବ୍ୟବହାର କରିପାରୁଁ । କୌଣସି ଅସ୍ତ୍ରଦ୍ୱାରା ରୋଗୀକୁ ଆରୋଗ୍ୟ କରାଯାଇପାରେ, ପୁଣି ସେହି ଅସ୍ତ୍ରଦ୍ୱାରା ତାହାର ପ୍ରାଣ ସଂହାର କରାଯାଇପାରେ । ଅକ୍ଷର-ଜ୍ଞାନ କ୍ଷେତ୍ରରେ ଏହି ଯୁକ୍ତି ପ୍ରୟୋଗ କରାଯାଇପାରେ । ଆମ୍ଭେମାନେ ପ୍ରତିଦିନ ଲକ୍ଷ୍ୟ କରୁଛୁଁ ଯେ, ବହୁ ଲୋକ ଏହାର ଅପବ୍ୟବହାର କରୁଛନ୍ତି ଏବଂ ଅତି ଅଳ୍ପ ଲୋକେ ଏହାର ସଦ୍‌ବ୍ୟବହାର କରୁଛନ୍ତି । ଯଦି ଆମର ଏ କଥା ସତ ହୋଇଥାଏ, ତେବେ ଅକ୍ଷର-ଜ୍ଞାନ ଦ୍ୱାରା ହିତ ଅପେକ୍ଷା ହାନି ଅଧିକ ହୋଇଛି ବୋଲି ପ୍ରମାଣିତ ହେଲା ।

ଶିକ୍ଷାର ସାଧାରଣ ଅର୍ଥ ଅକ୍ଷର-ଜ୍ଞାନ । ବାଳକବାଳିକାମାନଙ୍କୁ ପଠନ, ଲିଖନ ଓ ଗଣିତ ଶିକ୍ଷା ଦେବାକୁ ପ୍ରାଥମିକ ଶିକ୍ଷା କହନ୍ତି । ନିଜ ମୁଣ୍ଡିଝାଳ ଭୂଇଁରେ ମାରି, ଚାଷୀ ସଚ୍ଚୋପାୟରେ ତାହାର ଜୀବିକା ଅର୍ଜ୍ଜନ କରେ । ସଂସାର ବିଷୟରେ ତାହାର ସାଧାରଣ ଜ୍ଞାନ ଥାଏ । ନିଜର ପିତାମାତା, ସ୍ତ୍ରୀ, ସନ୍ତାନ, ସାଥୀ, ଗ୍ରାମବାସୀମାନଙ୍କ ସହ କିପରି ବ୍ୟବହାର କରିବାକୁ ହୁଏ, ତାହା ସେ ଜାଣେ । ନୈତିକ ନିୟମମାନ ସେ ଜାଣେ ଓ ପାଳନ କରେ । ମାତ୍ର ସେ ନିଜର ନାମ ଲେଖି ଜାଣେ ନାହିଁ । ତାକୁ ଅକ୍ଷରଜ୍ଞାନ ଦେଇ, ତାହାର କଅଣ କରି ପାରିବେ ବୋଲି ଆପଣ ଭାବୁଛନ୍ତି ? ଆପଣ ତାହାର ସୁଖରେ କଣିକାଏ ଯୋଗ କରିପାରିବେ କି ? ତାହାର କୁଡ଼ିଆ ଘର ଓ ନିଜର ଭାଗ୍ୟ ବିଷୟରେ ଆପଣ ତାହା ମନରେ ଅସନ୍ତୋଷ ଜନ୍ମାଇବାକୁ ଚାହାନ୍ତି କି ? ଆପଣ ତାହା କରିବାକୁ ଚାହୁଁଥିଲେ ସୁଦ୍ଧା, ଚାଷୀ ଏପରି ଶିକ୍ଷା ଚାହେଁ ନାହିଁ ।

ପାଶ୍ଚାତ୍ୟ ବିଚାର-ବନ୍ୟାରେ ଭାସିଯାଇ ଏ ଶିକ୍ଷାର ସପକ୍ଷରେ ଓ ବିପକ୍ଷରେ ଯୁକ୍ତିଗୁଡ଼ିକ ଓଜନ ନ କରି, ଆମେ ସିଦ୍ଧାନ୍ତ କରି ପକାଇଛୁଁ ଯେ ଦେଶବାସୀମାନଙ୍କୁ ଏହି ଶିକ୍ଷା ଦେବା ଆମର ଉଚିତ ଅଟେ ।

ବର୍ତ୍ତମାନ ଉଚ୍ଚ ଶିକ୍ଷାର କଥା ବିଚାର କରାଯାଉ । ମୁଁ ଭୂଗୋଳ, ଗଣିତ, ଜ୍ୟୋତିଷ, ବୀଜଗଣିତ, ଜ୍ୟାମିତି ଆଦି ପଢ଼ିଛି । ସେଥିରେ ମୋର କଅଣ ହୋଇଯାଇଛି ? ମୁଁ ଏସବୁ ପଢ଼ିବାଦ୍ୱାରା ମୋର ନିଜର ବା ପଡ଼ୋଶୀମାନଙ୍କର କି ଉପକାର ହୋଇଛି ? ଅଧ୍ୟାପକ ହକ୍ସ୍‌ଲେ ଶିକ୍ଷାର ସଂଜ୍ଞା ନିମ୍ନମତେ ଦେଇଛନ୍ତି : ଯେ କିଶୋର ଅବସ୍ଥାରେ ଏପରି ତାଲିମ୍ ପାଇଛି ଯେ, ତାହାର ଶରୀର ନିଜର ଇଚ୍ଛା-ଶକ୍ତିର ସଦା ଆଜ୍ଞାବହ, ଗୋଟିଏ ଯନ୍ତ୍ର ଭାବରେ ଦେହ ଯାହା କରିବାକୁ ସମର୍ଥ, ତାହା ସେ ଅନାୟାସରେ ଓ ଆନନ୍ଦରେ କରି ଯାଉଥାଏ, ଯାହାର ବୁଦ୍ଧି ସ୍ୱଚ୍ଛ, ଶାନ୍ତ (ଉତ୍ତେଜନାଶୂନ୍ୟ) ତର୍କର ଇଞ୍ଜିନ୍ ଏବଂ ଯେଉଁ ଇଞ୍ଜିନ୍‌ର ସକଳ ଅଙ୍ଗ ସମାନ ଶକ୍ତିଯୁକ୍ତ ଓ ସୁନ୍ଦର କାର୍ଯ୍ୟକାରୀ ଅବସ୍ଥାରେ ଅଛି····· ପ୍ରକୃତିର ମୌଳିକ ସତ୍ୟଗୁଡ଼ିକର ଜ୍ଞାନରେ ଯାହାର ମାନସ ପରିପୂର୍ଣ୍ଣ···ଯାହାର ପ୍ରବଳ ଇଚ୍ଛା-ଶକ୍ତି ଉଗ୍ର ଇନ୍ଦ୍ରିୟ-ବାସନାଗୁଡ଼ିକୁ ନିଜର ଆୟତ୍ତରେ ରଖିପାରିଛି, ଯେ କୋମଳ ବିବେକର ଶାସନ ଦ୍ୱାରା ସେଗୁଡ଼ିକୁ ବଶ କରି ରଖିଛି···ଯେ ସମସ୍ତ ପ୍ରକାରର ନୀଚତାକୁ ଘୃଣା କରେ ଏବଂ ଅନ୍ୟମାନଙ୍କୁ ଆପଣା ପରି ସମ୍ମାନ ଦିଏ,·····ଏହିପରି ବ୍ୟକ୍ତି ଯଥାର୍ଥରେ ଉଦାର ଶିକ୍ଷା ଲାଭ କରିଛି ବୋଲି ମୁଁ କହିବି । ଏହା ଭିନ୍ନ ଆଉ କେହି ଏ ଉଦାର ଶିକ୍ଷା ପାଇଛି ବୋଲି ମୁଁ କହିବି ନାହିଁ । କାରଣ, ସେହି (ପ୍ରକୃତ ଶିକ୍ଷିତ) ବ୍ୟକ୍ତି ପ୍ରକୃତି ସହ ଐକ୍ୟ ସ୍ଥାପନ

କରି ପାରିଛି । ସେ ପ୍ରକୃତିର ଓ ପ୍ରକୃତ ତାହାର ସର୍ବୋତ୍କୃଷ୍ଟ ବ୍ୟବହାର କରି ପାରିବ ।

ଏହାକୁ ହିଁ ଯଦି ଯଥାର୍ଥ ଶିକ୍ଷା କୁହାଯାଏ, ତେବେ ମୁଁ ଯେଉଁ ବିଜ୍ଞାନଗୁଡ଼ିକର କଥା କହିଲି, ସେଗୁଡ଼ିକୁ ମୁଁ ମୋର ଇନ୍ଦ୍ରିୟମାନଙ୍କୁ ସଂଯତ କରିବା ପାଇଁ ବ୍ୟବହାର କରିପାରି ନାହିଁ । ତେଣୁ ପ୍ରାଥମିକ ଶିକ୍ଷା ହେଉ ବା ଉଚ୍ଚ ଶିକ୍ଷା ହେଉ, ଅସଲ ଉଦ୍ଦେଶ୍ୟ ପାଇଁ ଏହା ଲୋଡ଼ା ନାହିଁ । ଏସବୁ ଆମକୁ ମନୁଷ୍ୟ କରାଇ ପାରିବ ନାହିଁ । ଆପଣା କର୍ତ୍ତବ୍ୟ କରିବାରେ ଏହା ଆମକୁ ଅଧିକ ସମର୍ଥ କରି ପାରିବ ନାହିଁ ।

ପାଠକ—ଏହା ଠିକ୍ ହୋଇଥିଲେ, ଆପଣଙ୍କୁ ମୋର ଆଉ ଗୋଟିଏ ପ୍ରଶ୍ନ କରିବାକୁ ଅଛି । କାହା ବଳରେ ଆପଣ ମୋତେ ଏ ସବୁ ବିଷୟ ବୁଝାଇ କହି ପାରୁଛନ୍ତି ? ଯଦି ଆପଣ ଉଚ୍ଚଶିକ୍ଷା ପାଇ ନ ଥାନ୍ତେ, ତେବେ ଆପଣ ମୋତେ ଏ ସବୁ ବୁଝାଇ ପାରିଥାନ୍ତେ କି ?

ସମ୍ପାଦକ—ଆପଣ ଭଲ ପ୍ରଶ୍ନଟିଏ ଉଠାଇଛନ୍ତି । କିନ୍ତୁ ମୋର ଉତ୍ତର ଅତି ସରଳ । ଉଚ୍ଚ ବା ନିମ୍ନ (ପ୍ରାଥମିକ) ଶିକ୍ଷା ପାଇ ନ ଥିଲେ, ମୋ' ଜୀବନ ଯେ ବ୍ୟର୍ଥ ହୋଇ ଯାଇଥାନ୍ତା, ମୁହୂର୍ତ୍ତକ ପାଇଁ ମୁଁ ଏପରି ବିଶ୍ୱାସ କରୁନାହିଁ । ମୁଁ କହିବୋଲି ପାରୁଛି ବୋଲି ମୁଁ କାହାର ସେବା କରି ପକାଉଛି - ମୁଁ ଏହା ଭାବୁନାହିଁ । କିନ୍ତୁ ମୋ' ଭିତରେ ସେବା କରିବାର ତୀବ୍ର ଭାବନା ଅଛି ଏବଂ ସେହି ଇଚ୍ଛା ପୂରଣ କରିବା ପାଇଁ ମୋର ଶିକ୍ଷାକୁ ମୁଁ କାମରେ ଲଗାଉଛି । ମୁଁ ଏ ଶିକ୍ଷାର ସଦ୍‌ବ୍ୟବହାର କରୁଥିଲେ ହେଁ, ଏହା କୋଟି କୋଟି ଲୋକଙ୍କ ପାଇଁ ନୁହେଁ, କେବଳ ଆପଣଙ୍କ ପରି ଅଳ୍ପ କେତେ ଜଣଙ୍କ ପାଇଁ । ଏହି ଦୃଷ୍ଟିରୁ ମୋର

ଯୁକ୍ତ ପ୍ରତିଷ୍ଠିତ ହୋଇ ଯାଉଛୁ । ଯେଉଁ ଶିକ୍ଷା ପ୍ରଧାନତଃ ଭ୍ରାନ୍ତ, ଆପଣ ଓ ମୁଁ ସେହି ଶିକ୍ଷାର ବିଷମୟ ପ୍ରଭାବରେ ପଡ଼ିଛୁଁ । ତାହା କୁ-ପ୍ରଭାବରୁ ମୁକ୍ତ ହୋଇ ପାରିଛୁ ବୋଲି ମୁଁ ଦାବୀ କରୁଛୁ ଏବଂ ମୋର ଅଭିଜ୍ଞତାର ଉପକାର ଆପଣଙ୍କୁ ଦେବା ପାଇଁ ମୁଁ ଚେଷ୍ଟା କରୁଛୁ । ଏହାଦ୍ୱାରା ମୁଁ ଏହି ଶିକ୍ଷାର ଅସାରତା ପ୍ରମାଣ କରି ଦେଖାଉଛୁ ।

ଅଧିକନ୍ତୁ, ସବୁ ପରିସ୍ଥିତିରେ ମୁଁ ସାକ୍ଷରତାର ବା ପୁସ୍ତକଗତ ଜ୍ଞାନର ଯେ ବିରୋଧ କରୁଛି, ତାହା ନୁହେଁ । ମୁଁ ଏତିକି ମାତ୍ର ଦେଖାଇଛି ଯେ, ଏ ଶିକ୍ଷାକୁ ଏକ ବରଦାନକାରୀ ଦେବତା ବୋଲି ଆମର ଭାବିବା ଉଚିତ ନୁହେଁ । ଏ ଶିକ୍ଷା ଆମର କାମଧେନୁ ନୁହେଁ । ଯଥାସ୍ଥାନରେ ଥିବା ପର୍ଯ୍ୟନ୍ତ ଏ ଆମର କାମରେ ଆସି ପାରିବ । ଏହାଦ୍ୱାରା ଆମେ ଯେତେବେଳେ ଇନ୍ଦ୍ରିୟଗୁଡ଼ିକୁ ଆମର ବଶୀଭୂତ କରି ପାରିବୁଁ, ସେତିକିବେଳେ ମୁଁ କହିବି ଯେ ଏ ଶିକ୍ଷାର ଆବଶ୍ୟକତା ଅଛି । ସେତେବେଳେ ଆମେ ସେହି ଶିକ୍ଷା ପାଇବାକୁ ଚାହିଁଲେ, ଆମେ ତାହାର ସଦ୍‌ବ୍ୟବହାର କରି ପାରିବୁଁ । ଅଳଙ୍କାର ପରି ତାହା ଆମଠାରେ ଶୋଭା ପାଇପାରେ । ଏଥିରୁ ସ୍ପଷ୍ଟ ହୋଇ ଯାଉଛି ଯେ, ଏ ଶିକ୍ଷାକୁ ଆମେ ସମସ୍ତଙ୍କ ପକ୍ଷରେ ବାଧ୍ୟତାମୂଳକ କରିବା ଅନାବଶ୍ୟକ । ଆମର ପ୍ରାଚୀନ ଶିକ୍ଷାପଦ୍ଧତି ଆମ ପକ୍ଷରେ ଯଥେଷ୍ଟ । ଚରିତ୍ର ଗଠନକୁ ଏଥିରେ ପ୍ରଥମ ସ୍ଥାନ ଦିଆଯାଇଛି, ଏବଂ ତାହାହିଁ ପ୍ରାଥମିକ ଶିକ୍ଷା । ସେହି ମୂଳଦୁଆ ଉପରେ ଆମେ ଯାହା ଗଢ଼ିବୁଁ, ତାହା ତିଷ୍ଠିବ ।

ପାଠକ—ତାହାହେଲେ, ଆପଣଙ୍କ ବିଚାରରେ ହୋମ୍‌ରୁଲ ବା ସ୍ୱରାଜ ପାଇଁ ଇଂରେଜୀ ଶିକ୍ଷା ଆଦୌ ଦରକାର ନାହିଁ ବୋଲି

ମୁଁ ବୁଝୁଛି । ମୋର ଏ ଧାରଣା ଠିକ୍ ତ ? ମୁଁ ଠିକ୍ ବୁଝିଛି ତ ?

ସଂପାଦକ—ଏହାର ଜବାବରେ ମୁଁ 'ହଁ' ଓ 'ନା' ଦୁଇଟାଯାକ କହିବି । ଦେଶର କୋଟି କୋଟି ଲୋକଙ୍କୁ ଇଂରାଜୀ ଶିକ୍ଷା ଦେବାର ଅର୍ଥ ସେମାନଙ୍କୁ ଦାସ କରି ରଖିବା । ମ୍ୟାକ୍'ଲେ ସାହେବ ଯେଉଁ ଶିକ୍ଷାର ମୂଳଦୁଆ ପକେଇଗଲେ, ତାହା ଆମକୁ ଦାସ କରି ରଖିଛି । ତାଙ୍କର ଉଦ୍ଦେଶ୍ୟ ଏହା ଥିଲା ବୋଲି ମୁଁ କହିବାକୁ ଚାହୁଁନାହିଁ । ମାତ୍ର ତାହାର ପରିଣତି ସେଇୟା ହୋଇଛି । ଗୋଟିଏ ବିଦେଶୀ ଭାଷାରେ ଆମକୁ ଯେ ହୋମ୍ ରୁଲ ବିଷୟ କହିବାକୁ ପଡ଼ୁଛି, ଏହା କଅଣ ଦୁଃଖ ଓ ଲଜ୍ଜାଜନକ ମନ୍ତବ୍ୟ ନୁହେଁ ?

ପୁଣି ଏକ ଉଲ୍ଲେଖଯୋଗ୍ୟ କଥା ହେଉଛି ଯେ ଇଉରୋପୀୟ-ମାନେ ଯେଉଁ ଶିକ୍ଷାପଦ୍ଧତିକୁ ବର୍ଜନ କରି ସାରିଲେଣି, ସେହି ପଦ୍ଧତି ଆମ ଦେଶରେ ଚଳୁଛି । ସେ ଦେଶର ବିଜ୍ଞ ଲୋକେ ସେହି ପଦ୍ଧତିର ନାନା ପରିବର୍ତ୍ତନ ବାରମ୍ବାର କରି ଆସିଛନ୍ତି । ସେ ଦେଶର ପ୍ରତ୍ୟେକ ଅଞ୍ଚଳ ନାନା ଉନ୍ନତିରେ ଲାଗିଛି । ୱେଲସ୍ ଇଂଲଣ୍ଡର ଗୋଟିଏ କ୍ଷୁଦ୍ର ଅଞ୍ଚଳ । ୱେଲସ୍‌ବାସୀଙ୍କ ମଧ୍ୟରେ ୱେଲସ୍ ଭାଷାର ଜ୍ଞାନକୁ ପୁନର୍ଜୀବିତ କରିବାପାଇଁ ଚେଷ୍ଟା ଚାଲିଛି । ୱେଲସ୍‌ର ବାଳକବାଳିକାମାନେ କିପରି ୱେଲସ୍ ଭାଷାରେ କଥାବାର୍ତ୍ତା କରିବେ, ସେଥିପାଇଁ ଇଂଲଣ୍ଡ ଚ୍ୟାନ-ସେଲର୍ ଲଏଡ଼ ଜର୍ଜ ସାହେବ ଆନ୍ଦୋଳନର ନେତୃତ୍ୱ ନେଇଛନ୍ତି । କିନ୍ତୁ ଆମର ଅବସ୍ଥା କଅଣ ? ପରସ୍ପର ପାଖକୁ ଆମେ ଅଶୁଦ୍ଧ ଇଂରାଜୀରେ ଚିଠି ଲେଖୁଛୁଁ ଏବଂ ଆମ ଦେଶର ଏମ୍. ଏ. ପାସ୍ କରିଥିବା ଲୋକେ ମଧ୍ୟ ଏହି ଭୁଲ ଇଂରାଜୀ

ଲେଖିବାରୁ ମୁକ୍ତ ନୁହନ୍ତି । ଆମର ସର୍ବୋତ୍କୃଷ୍ଟ ଭାବନାଗୁଡ଼ିକୁ ଆମେ ଇଂରାଜୀରେ ପ୍ରକାଶ କରିବାରେ ଲାଗିଛୁଁ । କଂଗ୍ରେସ ଅଧିବେଶନଗୁଡ଼ିକର କାର୍ଯ୍ୟ ଇଂରାଜୀରେ ଚାଲେ । ଆମର ଭଲ ଭଲ ଖବରକାଗଜ ଇଂରାଜୀରେ ଛପାଯାଏ । ଯଦି ଦୀର୍ଘକାଳ ଏହି କାରବାର ଚାଲେ, ତେବେ ଆମର ବଂଶଧରମାନେ ଆମକୁ ନିନ୍ଦା କରିବେ ଓ ଅଭିଶାପ ଦେବେ ।

ଏହା ଜାଣି ରଖିବା ଉଚିତ ଯେ ଇଂରାଜୀ ଶିକ୍ଷା ପାଇ ଆମେ ସମଗ୍ର ରାଷ୍ଟ୍ରକୁ ଦାସ କରି ରଖିଛୁଁ । ଏହାଦ୍ୱାରା ଆମ ଦେଶରେ ଶଠତା, ଉତ୍ପୀଡ଼ନ ଆଦି ବଢ଼ିଛି । ଇଂରାଜୀ ଜାଣିଥିବା ଲୋକେ ଦେଶବାସୀଙ୍କୁ ଠକିବାକୁ ଓ ଭୟଭୀତ କରି ରଖିବାକୁ କୌଣସି ସଂକୋଚ କରି ନାହାନ୍ତି । ଯଦି ବର୍ତ୍ତମାନ ଆମେ ଦେଶବାସୀମାନଙ୍କ ପାଇଁ ଯତ୍କିଞ୍ଚିତ୍ କାମ କରୁଛୁଁ, ତଦ୍ୱାରା ଆମେ ଆମର ଋଣର କିୟଦଂଶ ପରିଶୋଧ କରୁଅଛୁଁ ବୋଲି ମୁଁ କହିବି ।

ଏହା କଅଣ ଦୁଃଖଦାୟକ ନୁହେଁ ଯେ ବିଚାରାଳୟକୁ ଗଲେ, ମୁଁ ଇଂରାଜୀକୁ ମାଧ୍ୟମ ରୂପେ ବ୍ୟବହାର କରିବାକୁ ବାଧ୍ୟ ? ବାରିଷ୍ଟର ହେଲେ ମୋର ମାତୃଭାଷାରେ ମୁଁ କଥା କହିବି ନାହିଁ, ମୋର ନିଜ ଭାଷାରୁ ଅନୁବାଦ କରି ଅନ୍ୟ ଜଣେ ମୋତେ କହିବ । ଏହା କଅଣ ପୂର୍ଣ୍ଣ ମାତ୍ରାରେ ଯୁକ୍ତିହୀନ ନୁହେଁ ? ଏହା କଅଣ ଆମର ଦାସତ୍ୱର ଚିହ୍ନ ନୁହେଁ ? ଏଥିପାଇଁ ମୁଁ ଇଂରେଜମାନଙ୍କୁ ଦୋଷ ଦେବି, ନା ନିଜକୁ ? ଆମେ ଇଂରେଜୀ ଜାଣିଥିବା ଲୋକମାନେ ଭାରତକୁ ଦାସ କରି ରଖିଛୁଁ । ତେଣୁ ରାଷ୍ଟ୍ରର ଅଭିଶାପ ଇଂରେଜମାନଙ୍କ ଉପରେ ନ ପଡ଼ି, ଆମ ଉପରେ ପଡ଼ିବ ।

ମୁଁ ଆପଣଙ୍କୁ ଆଗରୁ କହିଛି ଯେ ମୁଁ ଆପଣଙ୍କର ପ୍ରଶ୍ନର ଉତ୍ତର ହଁ ଓ ନା ଉଭୟ କହିବି । ଏ ପର୍ଯ୍ୟନ୍ତ ମୁଁ 'ହଁ'ର ସପକ୍ଷରେ ମୋର ଯୁକ୍ତିଗୁଡ଼ିକ ଦର୍ଶାଇଥିଲି । ବର୍ତ୍ତମାନ 'ନା'ଟି ବୁଝାଇ କହିବି ।

ସଭ୍ୟତାର ବ୍ୟାଧି ଆମକୁ ଏତେ ଘାରିଛି ଯେ ଇଂରାଜୀ ଶିକ୍ଷାକୁ ସମ୍ପୂର୍ଣ୍ଣରୂପେ ଆମେ ଛାଡ଼ି ପାରିବୁ ନାହିଁ । ଯେଉଁମାନେ ଇଂରାଜୀ ଶିକ୍ଷା ପାଇ ସାରିଛନ୍ତି, ଯେଉଁଠି ତାହା ଅବଶ୍ୟ ଦରକାର, ସେଠାରେ ସେମାନେ ଇଂରାଜୀର ସଦ୍‌ବ୍ୟବହାର କରିପାରନ୍ତି । ଇଂରେଜମାନଙ୍କ ସହ କାରବାରରେ ଏବଂ ଆମ ଦେଶରେ ଯେଉଁମାନେ ଇଂରାଜୀ ବ୍ୟତୀତ ଅନ୍ୟ କୌଣସି ଭାଷାରେ କିଛି ପଢ଼ି କିମ୍ବା ଲେଖି ପାରିବେ ନାହିଁ, ସେମାନଙ୍କ ସହ ସମ୍ପର୍କରେ ଆସିବାବେଳେ ଏବଂ ଇଂରେଜମାନେ କିପରି ନିଜ ସଭ୍ୟତାରେ ବ୍ୟତିବ୍ୟସ୍ତ ହୋଇ ପଡ଼ିଲେଣି, ତାହା ଜାଣିବାକୁ ଆମେ ଇଂରାଜୀ ବ୍ୟବହାର କରିପାରୁ । ଯେଉଁମାନେ ଇଂରାଜୀ ପଢ଼ିଛନ୍ତି, ସେମାନେ ନିଜର ସନ୍ତାନମାନଙ୍କୁ ନିଜର ମାତୃଭାଷା ଜରିଆରେ ନୀତିଶିକ୍ଷା ଦେବେ ଏବଂ ଆଉ ଗୋଟିଏ ଭାରତୀୟ ଭାଷା ଶିଖାଇବେ । ପିଲାମାନେ ବଡ଼ ହୋଇଗଲେ ଓ ଇଚ୍ଛା କଲେ, ଇଂରାଜୀ ଭାଷା ଶିକ୍ଷା କରିପାରନ୍ତି । ମାତ୍ର ଶେଷ ଲକ୍ଷ୍ୟ ରହିବ ଯେ ଆମେ ତାହା ଆବଶ୍ୟକ ମନେ କରିବୁଁ ନାହିଁ । ତଦ୍ଦ୍ୱାରା ( ଇଂରାଜୀ ଜ୍ଞାନ ଜରିଆରେ ) ଅର୍ଥାଗମର ଉଦ୍ଦେଶ୍ୟକୁ ବର୍ଜନ କରିବାକୁ ପଡ଼ିବ । ଏହିପରି ସୀମିତ ଭାବରେ ଇଂରାଜୀ ଭାଷା ଶିଖିବାକୁ ଯାଇଥିବା ସମୟରେ ସୁଦ୍ଧା ଏହା ଜରିଆରେ ଆମେ କଅଣ ଶିଖିବୁଁ ଓ କଅଣ ନ ଶିଖିବୁଁ, ସେସବୁ ଭଲ ଭାବରେ ବିଚାର କରିବା ଆମର ଉଚିତ । ଆମେ କେଉଁ ବିଜ୍ଞାନଗୁଡ଼ିକ ଶିକ୍ଷା

କରିବୁଁ, ତାହା ମଧ୍ୟ ଜାଣିବା ଆମର ଦରକାର । ଆମେ ଟିକଏ ଚିନ୍ତା କଲେ ଜାଣିପାରିବୁଁ ଯେ ଆମେ ଇଂରାଜୀ ଡିଗ୍ରୀର ମୋହ ଛାଡ଼ିବା ମାତ୍ରେ ଶାସକମାନେ ( ଇଂରେଜ ) ଚମକିବେ ।

ପାଠକ—ତାହା ହେଲେ ଆମେ କି ଶିକ୍ଷା ଦେବୁ ?

ସଂପାଦକ—ଉପରେ ଏହାର ଉତ୍ତର କେତେକାଂଶରେ ଦିଆ ସରିଛି । ତଥାପି ଏ ସମସ୍ୟା ଉପରେ ଆମେ ଆହୁରି ବିଚାର କରିବା । ମୋର ମନେ ହେଉଛି ଆମ ଦେଶର ସବୁ ଭାଷାର ଉନ୍ନତି ସାଧନ କରିବା ଦରକାର । ଆମେ ନିଜ ମାତୃଭାଷା ମାଧ୍ୟମରେ ଶିକ୍ଷା ପାଇବା ଉଚିତ । ମାତୃଭାଷା ମାଧ୍ୟମରେ କେଉଁ କେଉଁ ବିଷୟ ପଢ଼ାଯିବା ଉଚିତ, ସେ ବିଷୟରେ ଏଠାରେ ବିସ୍ତାରିତ ଭାବରେ ଆଲୋଚନା କରିବା ଦରକାର ନାହିଁ । ଯେଉଁ ଇଂରାଜୀ ବହିଗୁଡ଼ିକରେ ଶିକ୍ଷଣୀୟ ବିଷୟମାନ ଅଛି, ସେଗୁଡ଼ିକୁ ବିଭିନ୍ନ ଭାରତୀୟ ଭାଷାରେ ଅନୁବାଦ କରିବାକୁ ହେବ । ଅନେକ ବିଜ୍ଞାନ ବିଷୟ ଶିକ୍ଷା କରିବାର ଛଳନା ଆମକୁ ଛାଡ଼ିବାକୁ ହେବ । ଧର୍ମ-ଶିକ୍ଷାକୁ, ଅର୍ଥାତ୍ ନୀତି-ଶିକ୍ଷାକୁ ସର୍ବପ୍ରଥମ ସ୍ଥାନ ଦେବାକୁ ପଡ଼ିବ । ପ୍ରତ୍ୟେକ ଶିକ୍ଷିତ ଭାରତୀୟ ନିଜର ମାତୃଭାଷା ଏବଂ ସେ ହିନ୍ଦୁ ହୋଇଥିଲେ ସଂସ୍କୃତ, ମୁସଲମାନ ହୋଇଥିଲେ ଆରବୀ, ପାର୍ଶୀ ହୋଇଥିଲେ ଫାରସୀ ଓ ପ୍ରତ୍ୟେକ ଭାରତୀୟ ହିନ୍ଦୀ ଭାଷା ଶିଖିବା ଆବଶ୍ୟକ ଅଟେ । ହିନ୍ଦୁମାନଙ୍କ ମଧ୍ୟରୁ କେତେକ ହିନ୍ଦୁ ଆରବୀ ଓ ପାର୍ଶୀ ଭାଷା, ଓ କେତେକ ମୁସଲମାନ ଓ ପାର୍ଶୀ ଲୋକ ସଂସ୍କୃତ ଭାଷା ଜାଣିବା ମଧ୍ୟ ଆବଶ୍ୟକ ଏବଂ ଉତ୍ତର ଭାରତ ଓ ଭାରତର କେତେକ ଅଧିବାସୀଙ୍କର ତାମିଲ ଭାଷା ଶିଖିବା ଉଚିତ । ସମଗ୍ର ହିନ୍ଦୀ

ଭାରତର ରାଷ୍ଟ୍ରଭାଷା ହେବ ଏବଂ ଯାହାର ଯେମିତ ଇଚ୍ଛା, ସେ ସେ ଏହାକୁ ଉର୍ଦ୍ଦୁ ବା ନାଗରୀ ଲିପିରେ ଲେଖି ପାରିବେ । ହିନ୍ଦୁ-ମୁସଲମାନଙ୍କ ମଧ୍ୟରେ ଘନିଷ୍ଠ ସମ୍ପର୍କ ରକ୍ଷା କରିବା ପାଇଁ ଅନେକ ଭାରତୀୟ ନାଗରୀ ଓ ଉର୍ଦ୍ଦୁ ଉଭୟ ଲିପି ଶିଖିବା ଆବଶ୍ୟକ ଅଟେ । ଯଦି ଆମେ ଅଳ୍ପ ଦିନ ମଧ୍ୟରେ ଏହା କରି ପାରିବୁ, ତେବେ ଆମେ ଇଂରାଜୀ ଭାଷାକୁ ବିଦାୟ କରି ଦେଇ ପାରିବୁ । ଆମେ ଏସବୁ କାହିଁକି କରିବୁ ? ଆମପରି ଗୋଲାମମାନଙ୍କ ପକ୍ଷରେ ଏହା ଆବଶ୍ୟକ । ଆମେମାନେ ଗୋଲାମ ପାଲଟି ଯାଉଛୁ । ପାଠୁଆ ଲୋକଙ୍କର ଗୋଲାମୀ ଯୋଗୁଁ ହିଁ ଭାରତବର୍ଷର ପ୍ରଜାମାନେ ଗୋଲାମ ହୋଇ ଯାଇଛନ୍ତି । ଆମ ପାଠୁଆ ଲୋକଙ୍କର ମୁକ୍ତି ସଙ୍ଗେ ସଙ୍ଗେ ଭାରତର ଜନତା ମଧ୍ୟ ମୁକ୍ତ ହୋଇଯିବେ ।

ପାଠକ—ଧର୍ମ-ଶିକ୍ଷା ବିଷୟଟି ବଡ଼ କଠିନ ବ୍ୟାପାର ।

ସମ୍ପାଦକ—ତଥାପି ଆମେ ଏହାକୁ ବାଦ୍‌ଦେଇ ପାରିବୁ ନାହିଁ । ନିରଟ ନାସ୍ତିକତା କଦାପି ଏ ଦେଶରେ ଉଧେଇ ପାରିବ ନାହିଁ । ଧର୍ମ-ଶିକ୍ଷାଦାନର ଦାୟିତ୍ୱ ଏକ କଠିନ ଦାୟିତ୍ୱ । ଧର୍ମଶିକ୍ଷା ବିଷୟରେ ବିଚାର କଲାବେଳକୁ ମୋର ମୁଣ୍ଡ ଘୂରିଯାଏ । ଆମର ଧର୍ମାଧିକାରୀମାନଙ୍କ ଭିତରେ ଶଠତା ଓ ସ୍ୱାର୍ଥପରତା ପୂରି ରହିଛି । ତଥାପି ଆମ୍ଭମାନଙ୍କୁ ସେମାନଙ୍କର ଦ୍ୱାରସ୍ଥ ହେବାକୁ ପଡ଼ିବ । ମୁଲ୍ଲା, ଦସ୍ତୁର ଓ ବ୍ରାହ୍ମଣମାନେ ଧର୍ମର ଚାବିକାଠିକୁ ସେମାନଙ୍କର ହାତରେ ଧରି ବସିଛନ୍ତି । ମାତ୍ର ଯଦି ସେମାନଙ୍କର ମଦ୍‌ବୁଦ୍ଧି ନ ହୁଏ, ତେବେ ଇଂରାଜୀ ଶିକ୍ଷାରୁ ଆମକୁ ଯେତିକି ଶକ୍ତି ମିଳୁଛି, ତାହାକୁ ଧର୍ମ ଶିକ୍ଷାରେ ନିୟୋଗ କରିବାକୁ ପଡ଼ିବ ଏପରି କରିବା ଆଦୌ କଷ୍ଟକର ହେବ ନାହିଁ । ମହାସାଗରର

କୂଳର କେବଳ ଧାରଟା ଦୂଷିତ ହୋଇଯାଇଛି ଏବଂ ଯେଉଁମାନେ ଏହି ଧାର ବା କନାରା ଉପରେ ରହିଛନ୍ତି, ସେହିମାନଙ୍କର ଶୋଧନ ଆବଶ୍ୟକ ପଡ଼ିବ । ଆମେ ଯେଉଁମାନେ ଏହି ଶ୍ରେଣୀଭୁକ୍ତ, ନିଜେ ନିଜକୁ ଶୋଧନ କରି ପାରିବୁ । ମୋର ଏ କଥା କୋଟି କୋଟି ଜନତା ପ୍ରତି ପ୍ରଯୁଜ୍ୟ ନୁହେଁ । ଭାରତବର୍ଷକୁ ତାହାର ସେହି (ଅତୀତ) ସମୁଜ୍ଜ୍ୱଳ ଅବସ୍ଥାକୁ ଫେରାଇ ଆଣିବାକୁ ହେଲେ, ଆମକୁ ସେହି ସ୍ଥାନକୁ ଫେରିଯିବାକୁ ପଡ଼ିବ । ବାକି କୋଟି କୋଟି ଭାରତୀୟ ଲୋକ ଠିକ୍ ବାଟରେ ଅଛନ୍ତି । ଆମ ସଭ୍ୟତା ( ର ପ୍ରବାହ ) ରେ ପ୍ରଗତି, ପଶ୍ଚାଦ୍‌ଗତି, ସଂସ୍କାର, ପ୍ରତିକ୍ରିୟା ସ୍ୱାଭାବିକ ଭାବରେ ଆସିବ । ମାତ୍ର ଆମକୁ ଗୋଟିଏ ପ୍ରଯତ୍ନ କରିବାକୁ ହେବ । ତାହା ହେଉଛି ପାଶ୍ଚାତ୍ୟ ସଭ୍ୟତାକୁ ଆମ ଦେଶରୁ ବହିଷ୍କାର କରିବା । ସେତିକି କରି ଦେଲେ, ଆଉ ସବୁ ଆପେ ଆପେ ହୋଇଯିବ ।

## କଳକବ୍ଜା

ପାଠକ—ଆପଣ ଯେତେବେଳେ ପାଶ୍ଚାତ୍ୟ ସଭ୍ୟତାକୁ ବହିଷ୍କାର କରିବା କଥା କହୁଛନ୍ତି, ତାହାହେଲେ ଆପଣ ଏହା ମଧ୍ୟ କହିବେ ଯେ ଆମର କୌଣସି କଳକବ୍ଜା ଦରକାର ନାହିଁ ।

ସମ୍ପାଦକ—ଏ ପ୍ରଶ୍ନ ପଚାରି ଦେଇ ଆପଣ ମୋ କଟା ଘାଆରେ ଚୂନ ଦେଇ ଦେଲେ । ଯେତେବେଳେ ମୁଁ ମିସ୍ଟର ରମେଶଚନ୍ଦ୍ର ଦତ୍ତଙ୍କ ଦ୍ୱାରା ରଚିତ 'ଭାରତବର୍ଷର ଆର୍ଥିକ ଇତିହାସ' (Economic History of India ) ପଢ଼ିଲି, ସେତେବେଳେ ମୁଁ କାନ୍ଦିଲି । ସେ କଥା ମନେ ପକାଇଲେ, ମୋ ହୃଦୟ ବିଦୀର୍ଣ୍ଣ ହୋଇଯାଏ । ଏହି କଳକାରଖାନା ଯୋଗୁଁ ଭାରତ ବର୍ଷ କାଙ୍ଗାଳ ହୋଇଗଲା । ମ୍ୟାଞ୍ଚେସ୍ଟର ଆମର ଯେଉଁ କ୍ଷତି କରିଛି, ତାହାର କଳନା କରି ହେବ ନାହିଁ । ତାହାରି ଯୋଗୁଁ ହିଁ ଭାରତବର୍ଷର ହସ୍ତଶିଳ୍ପ ଲୋପ ପାଇଯାଇଛି ।

ମୁଁ ଭୁଲ୍ କହିଲି । ମ୍ୟାଞ୍ଚେସ୍ଟରକୁ କିପରି ଦୋଷ ଦେଇ ହେବ ? ମ୍ୟାଞ୍ଚେସ୍ଟରରେ ନିର୍ମିତ ଲୁଗା ଆମେ ପିନ୍ଧିଲୁଁ ବୋଲି ସିନା ସେମାନେ ବୁଣିଲେ । ବଙ୍ଗ ପ୍ରଦେଶର ପରାକ୍ରମ କଥା ପଢ଼ି ମୋର ଭାରି ଆନନ୍ଦ ହେଲା । ବଙ୍ଗଳା ପ୍ରଦେଶରେ ଲୁଗାକଳ ନ ଥିଲା । ସେଥିପାଇଁ ସେଠା ଲୋକେ ପୁଣି ତାଙ୍କ ପୁରୁଣା ହାତତନ୍ତ ଚଳେଇଲେ । ବଙ୍ଗଳା ଯେ ବମ୍ବେର ଲୁଗାକଳଗୁଡ଼ିକୁ ଏହାଦ୍ୱାରା ପ୍ରୋତ୍ସାହନ ଦେଲା, ସେ କଥା ଠିକ୍ ।

ମାତ୍ର ଯଦି ବଙ୍ଗଳାର ଲୋକେ କଳକାରଖାନା-ତିଆରି ସବୁ ଜିନଷ ବର୍ଜନ କରିଥାନ୍ତେ, ତେବେ ଆହୁରି ଭଲ ହୋଇଥାନ୍ତା ।

ଏ କଳକାରଖାନା ୟୁରୋପକୁ ଧ୍ୱଂସ କରିବାକୁ ବସିଲଣି । ବିଲାତର ଦ୍ୱାରା ଦେଶରେ ଏ ଧ୍ୱଂସ ପହଞ୍ଚିଲଣି । ବର୍ତ୍ତମାନ ଭାରତରେ ମଧ୍ୟ ସେହି ବାଆ ବହୁଛି । ଆଧୁନିକ ସଭ୍ୟତାର ଗୋଟାଏ ବଡ଼ ପ୍ରତୀକ ହେଉଛି କଳକାରଖାନା । ଏଗୁଡ଼ିକ ମହାପାପ ।

ବମ୍ବେର କଳକାରଖାନାରେ ଯେଉଁ ଶ୍ରମିକମାନେ କାମ କରୁଛନ୍ତି, ସେମାନେ ଗୋଲାମ ପାଲଟି ଗଲେଣି । ସେଥିରେ ଯେଉଁ ସ୍ତ୍ରୀ-ଲୋକମାନେ ଖଟୁଛନ୍ତି, ସେମାନଙ୍କର ଦଶା ଦୟନୀୟ । ଏ କଳକାରଖାନା ଯେତେବେଳେ ନ ଥିଲା, ସେତେବେଳେ ଏ ସ୍ତ୍ରୀ-ଲୋକମାନେ ତ ଭୋକ-ଉପାସରେ ମରୁ ନ ଥିଲେ । କଳକାର-ଖାନାର ନିଶା ଯଦି ଏ ଦେଶକୁ ଘାରିବ, ତେବେ ଭାରତବର୍ଷର ଅବସ୍ଥା ଦୁଃଖଦାୟକ ହୋଇଯିବ । ଲୋକସାଧାରଣଙ୍କର ମତ ସମ୍ପୂର୍ଣ୍ଣ ଭିନ୍ନ ହୋଇଥିବାରୁ ତାହା ଆପଣଙ୍କୁ ଅଡ଼ୁଆ ଲାଗୁଥିବ । କିନ୍ତୁ ମୁଁ କହିବାକୁ ବାଧ୍ୟ ହେଉଛି ଯେ ଭାରତବର୍ଷରେ ଅଧିକ ଲୁଗାକଳ ବସାଇବା ଅପେକ୍ଷା ମ୍ୟାଂଚେଷ୍ଟରକୁ ପଇସା ଦେବା ଓ ସେଠାର ପତଳା ଫିନ୍ ଫିନ୍ ଲୁଗା ପିନ୍ଧିବା ବରଂ ଶ୍ରେୟସ୍କର । କାରଣ, ମ୍ୟାଂଚେଷ୍ଟରର ଲୁଗାପଟା ବ୍ୟବହାର କରିବା ଦ୍ୱାରା କେବଳ ଆମର ପଇସା ନଷ୍ଟ କରିବୁ । କିନ୍ତୁ ଯଦି ଆମେ ଭାରତବର୍ଷରେ ମ୍ୟାଂଚେଷ୍ଟର ସୃଷ୍ଟି କରିବୁ, ତେବେ ସେ ପଇସା ଭାରତବର୍ଷରେ ରହିବ ସତ୍ୟ, ମାତ୍ର ଆମର ରକ୍ତର ବଦଳରେ ସେହି ପଇସା ଏ ଦେଶରେ ରହିବ । କାରଣ ତାହା ଆମର ନୈତିକ

ତାକୁ ଏକାଥରେ ଖାଇ ଦେବ । ମୋର ଏହି କଥାର ପ୍ରମାଣ ଆପଣ ସେହି ମିଲ୍‌-ଶ୍ରମିକ-ମାନଙ୍କଠାରୁ ପାଇବେ । ଯେଉଁମାନେ ଏ କଳକାରଖାନା ବଳରେ ଧନ ଉପାର୍ଜନ କରୁଛନ୍ତି, ସେମାନେ ଅନ୍ୟ ଧନୀ ଲୋକମାନଙ୍କଠାରୁ ଭଲ ଲୋକ ହେବାର କୌଣସି ସମ୍ଭାବନା ନାହିଁ । ଭାରତର ରକ୍‌ଫେଲର୍‌ ଆମେରିକାର ରକ୍‌ଫେଲର୍‌ଠାରୁ † କୌଣସି ଗୁଣରେ ଭଲ ହେବେ ବୋଲି ଭାବିବା ଭୁଲ୍‌ । ଦରିଦ୍ର ହୋଇ ପଡ଼ିଥିବା ଭାରତବର୍ଷ ଦାସତ୍ୱ-ବନ୍ଧନରୁ ମୁକ୍ତ ହୋଇ ପାରିବ, ମାତ୍ର ନୈତିକତାକୁ ବଳି ଦେଇ ଧନୀ ହୋଇଥିବା ଭାରତବର୍ଷ ପକ୍ଷରେ ସ୍ୱାଧୀନତା ଫେରି ପାଇବା ବଡ଼ କଠିନ ହେବ । ମୋର ଆଶଙ୍କା, ଏହି ଧନୀ ଲୋକମାନେ ହିଁ ବ୍ରିଟିଶ ଶାସନକୁ ସମର୍ଥନ କରୁଛନ୍ତି ବୋଲି ଆମକୁ ସ୍ୱୀକାର କରିବାକୁ ପଡ଼ିବ । ବ୍ରିଟିଶ ଶାସନର ସ୍ଥାୟିତ୍ୱ ବା ଦୃଢ଼ତା ସହିତ ସେମାନଙ୍କର ସ୍ୱାର୍ଥ ଜଡ଼ିତ । ପଇସା ମଣିଷକୁ ଅସହାୟ କରିଦିଏ । ଯୌନକ୍ରିୟା ସମ୍ବନ୍ଧୀୟ ପାପ ମଧ୍ୟ ସାମାନ୍ୟ ରୂପେ କ୍ଷତିକାରକ । ଏ ଦୁଇଟି ଯାକ ବିଷ । ଏହା ସାପ-ବିଷଠାରୁ ବଳି ଉତ୍କଟ । ସାପ-କାମୁଡ଼ାରେ ଆମର ଦେହଟା ନଷ୍ଟ ହୋଇଯାଏ, ମାତ୍ର ପଇସା ଲୋଭ ଓ କାମୁକତା ମଣିଷର ଦେହ, ମନ ଓ ଆତ୍ମାକୁ ନଷ୍ଟ କରେ । ତେଣୁ ଆମ ଦେଶରେ କଳକାରଖାନାର ଅଗ୍ରଗତି ହେବାରେ ଆମର ଆନନ୍ଦିତ ହେବାର କୌଣସି କାରଣ ନାହିଁ ।

ପାଠକ—ତାହା ହେଲେ କଅଣ କଳକାରଖାନାଗୁଡ଼ାକ ବନ୍ଦ କରି ଦେବୁଁ ?

ସମ୍ପାଦକ—ତାହା କରିବା କଠିନ । ଯେଉଁ ଜିନିଷ ସ୍ଥାୟୀ ହୋଇଗଲାଣି, ତାକୁ ନଷ୍ଟ କରିବା ସହଜ ନୁହେଁ । ସେଥିପାଇଁ

† ପୃଥିବୀର ଜଣେ ବିଶିଷ୍ଟ ଧନୀ ବ୍ୟକ୍ତି ।

ମୂଳରୁ କାର୍ଯ୍ୟାରମ୍ଭ ନ କରିବା ହିଁ (ଆଉ କଳକାରଖାନା ନ ) ବସାଇବା ) ସବୁଠାରୁ ବୁଦ୍ଧିମାନ୍ ଲୋକର କାମ ହେବ, ମୁଁ ଭାବେଁ । ଆମେ କଳକାରଖାନାର ମାଲିକମାନଙ୍କୁ ଘୃଣା ଦୃଷ୍ଟିରେ ଦେଖି ପାରିବା ନାହିଁ, ସେମାନଙ୍କୁ ଦୟା କରିବାକୁ ହେବ । ସେମାନେ ହଠାତ୍ କଳକାରଖାନା ଉଠାଇ ଦେବେ ବୋଲି ଆଶା କରିବାଟା ଠିକ୍ ହେବ ନାହିଁ । ମାତ୍ର ଆଉ କଳକାରଖାନା ନ ବଢ଼ାଇବାକୁ ଆମେ ସେମାନଙ୍କୁ ବିନୟ ପୂର୍ବକ ଅନୁରୋଧ କରିବା । ସେମାନେ ଯଦି ଭଲ ଲୋକ ହୋଇଥିବେ, ତେବେ ସ୍ୱତଃ ପ୍ରବୃତ୍ତ ହୋଇ ସେମାନଙ୍କର ଏ ବ୍ୟବସାୟ ଧୀରେ ଧୀରେ ସଙ୍କୁଚିତ କରି ଦେବେ । ସେମାନେ ପୁରୁଣା ଅରଟ ଓ ତନ୍ତ ଅସଂଖ୍ୟ ପରିବାରରେ ଚଳେଇ ପାରିବେ ଓ ଲୋକେ ଯେଉଁ ଲୁଗା ବୁଣିବେ, ତାକୁ ସେମାନେ କିଣାବିକା କରି ପାରିବେ । କଳ ମାଲିକମାନେ ଏହା କରନ୍ତୁ ବା ନ କରନ୍ତୁ, ଲୋକେ ଇଚ୍ଛା କଲେ କଳ ତିଆରି ଜିନିଷ ବ୍ୟବହାର କରିବା ବନ୍ଦ କରି ଦେଇପାରିବେ ।

ପାଠକ—ଏ ତ ଗଲା କଳ-ଲୁଗା କଥା । ମାତ୍ର କଳକାରଖାନାରେ ତ ଆହୁରି ଅନେକ ଜିନିଷ ତିଆରି ହେଉଛି । ସେଗୁଡ଼ିକୁ ଆମକୁ ବିଦେଶରୁ ମଗାଇବାକୁ ହେବ କିମ୍ବା ଆମ ଦେଶରେ ସେହି କଳକାରଖାନା ବସାଇବାକୁ ହେବ ।

ସମ୍ପାଦକ—ସତ ତ । ଆମ ଦେବ-ଦେବୀମାନଙ୍କର ମୂର୍ତ୍ତିମାନ ସୁଦ୍ଧା ଜର୍ମାନୀର କଳରେ ତିଆରି ହୋଇ ଆସୁଛି । ଦିଆସିଲି, ଆଲପିନ୍ ଓ କାଚ ପଦାର୍ଥର କଥା ଆଉ କଅଣ କହିବା ? ମୋର ଜବାବ କିନ୍ତୁ ସେହି ଗୋଟିଏ । ଏ ଜିନିଷଗୁଡ଼ାକ ଯେତେବେଳେ କଳକାରଖାନାରେ ତିଆରି ହେଉ ନ ଥିଲା, ସେତେବେଳେ ଭାରତବର୍ଷ କଅଣ କରୁଥିଲା ? ପୂର୍ବପରି ଆଜି ମଧ୍ୟ ଆମେ ଚଳିପାରୁ

ଯେତେଦିନଯାଏ ଆମେ ହାତରେ ଆଲପିନ୍ ତିଆରି ନ କରିଛୁ, ସେପର୍ଯ୍ୟନ୍ତ ବିନା ଆଲପିନ୍‌ରେ କାମ ଚଳେଇବା । କାଚଜିନିଷରି ଚକ୍‌ଚକିଆ ଝଲକ ଆମର ଦରକାର ନାହିଁ । ମାଟିର ଦୀପରେ ତେଲ ଦେଇ ତାକାରେ ବଳିତା କରି ଆମେ ଆଲୁଅ କାମ ଚଳାଇବୁ । ଏହା କଲେ ଆମର ଦୃଷ୍ଟି ଶକ୍ତି ଖରାପ ହେବ ନାହିଁ, ପଇସା ବଞ୍ଚିବ, ଆମେ ସ୍ୱଦେଶୀ ପଦାର୍ଥକୁ ସମର୍ଥନ କରିବୁ ଓ ଏହି ରୂପେ ସ୍ୱରାଜ୍ୟ ଲାଭ କରିବୁ ।

ସବୁ ଲୋକେ ଏ ସମସ୍ତ କାମ ଏକା ସମୟରେ କରିବେ ବା ଏକାବେଳକେ ବହୁତ ଲୋକ ସମସ୍ତ କଳ-ତିଆରି ଜିନିଷ ବର୍ଜନ କରିବେ ବୋଲି ଭାବିବା ଠିକ୍ ନୁହେଁ । ମାତ୍ର ଏହି ବିଷୟଟା ଯଦି ଠିକ୍ ବୋଲି ଧରାଯିବ, ତେବେ ଆମେ କେ କେ ପଦାର୍ଥ ଛାଡ଼ି ପାରିବୁ ଏବଂ କ୍ରମେ ସେଗୁଡ଼ିକର ବ୍ୟବହାର ବନ୍ଦ କରିଦେବୁ, ତାହା ଦେଖି ପାରିବୁ । ଆମେ ଏହା କଲେ, ଅନ୍ୟମାନେ ତାକୁ ଅନୁସରଣ କରିବେ । କିନ୍ତୁ ପ୍ରଥମେ ଏ ବିଷୟର ମୂଳ ଠାଣି ହେବା ଦରକାର । ତାହା ପରେ ତଦନୁସାରେ କାମ ହେବ । ପ୍ରଥମେ ଜଣେ ଲୋକ ତାହା କରିବ, ପୁଣି ଦଶ, ଦଶରୁ ଶହେ ଜଣ, ଏହିପରି ସେ ନଡ଼ିଆ ଗପ ପରି ସଂଖ୍ୟା ବଢ଼ି ଚାଲିବ । ବଡ଼ ଲୋକେ ଯେଉଁ କାମ କରନ୍ତି, ସାଧାରଣ ଲୋକ ତାକୁ ଖୁସିରେ କରି ଯାଆନ୍ତି । ଏ କଥାଟା କିଛି ଜଟିଳ ବା କଷ୍ଟ-ସାଧ୍ୟ ନୁହେଁ । ଅନ୍ୟମାନେ ଆମ ସାଙ୍ଗକୁ ନ ଆସିବା ପର୍ଯ୍ୟନ୍ତ ଆପଣଙ୍କର ବା ମୋର ରହି ବସିବା କିଛି ଦରକାର ନାହିଁ । କଥାଟାକୁ ବୁଝିଯିବା ମାତ୍ରେ ଆମର ଏହା କରିବା ଉଚିତ । ଯେଉଁମାନେ କରିବେ ନାହିଁ, ସେମାନେ କ୍ଷତିଗ୍ରସ୍ତ ହେବେ ଏବଂ ଯେଉଁମାନେ ଏ ତତ୍ତ୍ୱକୁ ବୁଝିବା

ସତ୍ତ୍ୱେ ଏହା କରିବେ ନାହିଁ, ସେମାନଙ୍କୁ ଭୀରୁ ବା ଦାମ୍ଭିକ କୁହାଯିବ ।

ପାଠକ—ଟ୍ରାମ ଓ ବିଦ୍ୟୁତ୍ ଶକ୍ତିର କଥା କଅଣ ହେବ ?

ସମ୍ପାଦକ—ଏ ପ୍ରଶ୍ନଟା ଆପଣ ବହୁତ ବିଳମ୍ବରେ ପଚାରିଲେ । ଏ ପ୍ରଶ୍ନର ମୂଲ୍ୟ ବା ତାତ୍ପର୍ଯ୍ୟ ନାହିଁ । ଯଦି ଆମେ ରେଲୱେ ବିନା ଚଳିପାରୁଁ, ତେବେ ଟ୍ରାମକୁ ଛାଡ଼ି ମଧ୍ୟ ଚଳି ପାରିବୁଁ । ଯନ୍ତ୍ର ବା କଳକାରଖାନା ତ ସାପ-ଗାତ ଏପରି ଗୋଟିଏ ଜିନିଷ ଯେ ସେଥିରେ ଗୋଟିକରୁ ଶହେଟି ରହିପାରେ । ସେଗୁଡ଼ିକ ଗୋଟାକ ପଛକୁ ଗୋଟାଏ ଲାଗି କରି ରହିଥାଏ । ଯେଉଁଠି କଳକାରଖାନା ବସେ, ସେଠାରେ ବଡ଼ ବଡ଼ ସହର ଗଢ଼ି ଉଠେ । ବଡ଼ ସହରରେ ରେଳଗାଡ଼ି ଓ ଟ୍ରାମଗାଡ଼ି ଚାଲେ । ସେଠି ବିଜୁଳିବତି ଲୋଡ଼ା ହୁଏ । ଆପଣ ଜାଣିଥିବେ ଯେ ବିଲାତରେ ଗାଁଗଣ୍ଡାରେ ବିଜୁଳିବତି ବା ଟ୍ରାମ୍ ନାହିଁ । ସାଧୁ ସଚ୍ଚୋଟ ଡାକ୍ତର ବା ଚିକିତ୍ସକମାନେ ଆପଣଙ୍କୁ ବୁଝାଇ ଦେଇ ପାରିବେ ଯେ ଯେଉଁଠି ରେଳଗାଡ଼ି, ଟ୍ରାମ, ଆଦି କୃତ୍ରିମ ଯାନ ବଢ଼ିଯାଇଛି, ସେଠାରେ ଲୋକଙ୍କର ସ୍ୱାସ୍ଥ୍ୟ ଖରାପ ହୋଇଯାଇଛି । ମୋର ମନେ ଅଛି, ଗୋଟିଏ ୟୁରୋପୀୟ ସହରରେ ଥରେ ପଇସାର ଅଭାବ ଘଟିଲା । ସେତେବେଳେ ଟ୍ରାମ୍ ଓକିଲ ଓ ଡାକ୍ତରଙ୍କ ଆୟ କମି ଯାଇଥିଲା କିନ୍ତୁ ପୂର୍ବାପେକ୍ଷା ଲୋକେ ଊଣା ଅସୁସ୍ଥ ହୋଇଥିଲେ । କଳକାରଖାନାର ଗୋଟିଏ ହେଲେ ଭଲଗୁଣ ମୋର ମନେ ପଡ଼ୁ ନ ଥିବା ସ୍ଥଳେ ତାହାର ଦୁର୍ଗୁଣ ବିଷୟରେ ମୁଁ ଗୋଟାଏ ବହି ଲେଖି ଦେଇ ପାରିବି ।

ପାଠକ ଆପଣ ଯେତେ କଥା କହିଲେ ଏ ସବୁ ଯନ୍ତ୍ର ସାହାଯ୍ୟରେ ତ ଛପା ହେବ । ତାହା ଯନ୍ତ୍ରର ଗୁଣ ନା ଦୋଷ ?

ସମ୍ପାଦକ—ଏଇଟା ହିଷସ୍ୟ ହିଷମୌଷଧମ୍ ପର । ଏଥିରେ ଯନ୍ତ୍ରର କିଛି ଗୁଣ ନାହିଁ । ଯନ୍ତ୍ର ଶେଷ ପାଇଁ ପାଇଁ ଆମକୁ ଜଣାଏ, "ସାବଧାନ ହୁଅ, ମୋତେ ଛାଡ଼ି କାମ କରିଯାଅ । ମୋ ଦ୍ୱାରା ତୁମର କୌଣସି ଉପକାର ବା ଲାଭ ହେବ ନାହିଁ ।" ଯଦି କେହି ଓ୍ୱପାକଳ ଦ୍ୱାରା ଲାଭବାନ ହେବେ, ସେ ହେଉଛନ୍ତି କଳକାରଖାନା ପଛରେ ପାଗଳ ହୋଇଥିବା ଲୋକେ ।

ମୂଳକଥାଟି ଭୂଲନ୍ତୁ ନାହିଁ । ଯନ୍ତ୍ର ବା କଳକାରଖାନା ଯେ ଖରାପ, ଏ କଥାଟା ଉପଲବ୍ଧି କରିବା ଦରକାର । ତାହାହେଲେ ଆମେ ଧୀରେ ଧୀରେ ସେଗୁଡ଼ିକୁ ପରିତ୍ୟାଗ କରିବାକୁ ସମର୍ଥ ହେବୁଁ । କୌଣସି ଜିନିଷ ତୁରନ୍ତ ପାଇବାପାଇଁ ପ୍ରକୃତି କୌଣସି ସିଧାସଳଖ ବାଟ ରଖିନାହିଁ । କଳକାରଖାନାକୁ ଯଦି ଗୋଟାଏ ଆଶୀର୍ବାଦ ରୂପେ ସ୍ୱାଗତ ନ କରି, ଯଦି ଆମେ ତାକୁ ଅଭିଶାପ ଭାବରେ ଦେଖିବୁଁ, ତେବେ ଶେଷକୁ ତାହା ନିଶ୍ଚୟ ଦୂର ହୋଇଯିବ ।

# ଉପସଂହାର

ପାଠକ—ଆପଣଙ୍କ ବକ୍ତୃତାରୁ ଜଣା ପଡ଼ୁଛି, ଆପଣ ଗୋଟାଏ ତୃତୀୟ ଦଳ ଗଢ଼ିବାକୁ ଚାହୁଁଛନ୍ତି । ଆପଣ ଏକ୍‌ସଟ୍ରିମିସ୍ଟ ବା ଚରମପନ୍ଥୀ ନୁହନ୍ତି କିମ୍ବା ମଡ଼ରେଟ୍ ବା ନରମପନ୍ଥୀ ମଧ୍ୟ ନୁହନ୍ତି ।

ସମ୍ପାଦକ—ଏଇଟା ଭୁଲ୍ କଥା । ତୃତୀୟ ଦଳ କଥା ମୋ ମନରେ ଆଦୌ ନାହିଁ । ସମସ୍ତଙ୍କ ବିଚାର ଏକାପରି ହୁଏ ନାହିଁ । ନରମପନ୍ଥୀ ମଧ୍ୟ ସମସ୍ତେ ଏକା ବିଚାରର ଲୋକ ବୋଲି ଭାବିବା ଠିକ୍ ନୁହେଁ । ଯେଉଁ ଲୋକେ କେବଳ ଜନସାଧାରଣଙ୍କର ସେବା କରିବାକୁ ଚାହାନ୍ତି, ସେମାନଙ୍କର ପୁଣି ଗୋଟାଏ ଦଳ କଅଣ ? ମୁଁ ଚରମପନ୍ଥୀ ଓ ନରମପନ୍ଥୀ ଉଭୟଙ୍କ ସେବା କରିବି । ଯେଉଁଠି ସେମାନଙ୍କ ବିଚାର ସହିତ ମୋର ମତଭେଦ ହେବ, ସେଠାରେ ମୁଁ ନମ୍ରତାର ସହିତ ମୋ ମତ ବ୍ୟକ୍ତ କରିବି ଏବଂ ମୋ ସେବାକାମ କରିଯିବି ।

ପାଠକ—ଏ ଦୁଇ ଦଳଙ୍କୁ ଆପଣ କଅଣ କହିବେ ?

ସମ୍ପାଦକ—ମୁଁ ଏକ୍‌ସଟ୍ରିମିସ୍ଟ ବା ଚରମପନ୍ଥୀଙ୍କୁ କହିବି "ଆପଣମାନଙ୍କର ଉଦ୍ଦେଶ୍ୟ ହେଉଛି ଭାରତବର୍ଷ ପାଇଁ ସ୍ୱରାଜ୍ୟ ହାସଲ କରିବା । ଆପଣମାନେ କେବଳ ଇଚ୍ଛା କରିବା ମାତ୍ରେ ସ୍ୱରାଜ୍ୟ ମିଳିଯିବ ନାହିଁ । ସ୍ୱରାଜ୍ୟ ତ ପ୍ରତ୍ୟେକ ନିଜପାଇଁ ଅର୍ଜନ କରିବେ ।

ଅନ୍ୟ ଲୋକ ମୋପାଇଁ ଯେଉଁ ସ୍ୱରାଜ ଆଣାଇ ଦେବେ, ତାହା ସ୍ୱରାଜ୍ୟ ନୁହେଁ, ପରରାଜ୍ୟ । ସେଥିପାଇଁ କେବଳ ଇଂରେଜମାନଙ୍କୁ ବାହାର କରି ଦେଲେ ଆପଣ ସ୍ୱରାଜ୍ୟ ପାଇଯିବେ ବୋଲି ଯଦି ଭାବୁଥାନ୍ତି, ତେବେ ତାହା ଠିକ୍ ନୁହେଁ । ପ୍ରକୃତ ସ୍ୱରାଜ୍ୟ ବୋଇଲେ କଅଣ, ତାହା ମୁଁ ପୂର୍ବରୁ ବୁଝାଇଛି । ଅସ୍ତ୍ରଶସ୍ତ୍ର ଦ୍ୱାରା ସେ ସ୍ୱରାଜ୍ୟ ଆପଣ କେବେହେଁ ପାଇବେ ନାହିଁ । ପଶୁବଳ ବା ଅସ୍ତ୍ରବଳ କେବେହେଁ ଭାରତବର୍ଷର ମାଟି ପାଇଁ ସ୍ୱାଭାବିକ ନୁହେଁ । ସେଥିପାଇଁ ସତ୍ୟାଗ୍ରହ ବା ଆତ୍ମବଳକୁ ହିଁ ଆଶ୍ରା କରନ୍ତୁ । ଏ କଥା ମନରେ ଭୁଲିବା ସ୍ଥାନ ଦିଅନ୍ତୁ ନାହିଁ ଯେ ସ୍ୱରାଜ୍ୟ ଅର୍ଜ୍ଜନ କରିବା ପାଇଁ କୌଣସି ପର୍ଯ୍ୟାୟରେ ହିଂସା ବା ଅସ୍ତ୍ରବଳ ଆମର ଆବଶ୍ୟକ ଅଟେ ।

ନରମପନ୍ଥୀଙ୍କୁ ମୁଁ କହିବି, "ଖାଲି ଆବେଦନ-ନିବେଦନ କରୁଥିବା ଆମର ହୀନତାର ପରିଚାୟକ । ତଦ୍ୱାରା ଆମେ ଆମ ହୀନତା ସ୍ୱୀକାର କରୁଛୁ । ଇଂରେଜଶାସନ ଆମ ପକ୍ଷରେ ଅପରିହାର୍ଯ୍ୟ କହିବାଟା ଆମ ପକ୍ଷରେ ଭଗବାନଙ୍କର ଅସ୍ତିତ୍ୱକୁ ଅସ୍ୱୀକାର କରିବା ସଙ୍ଗେ ସମାନ । ଭଗବାନ୍‌ଙ୍କ ଛଡ଼ା ଅନ୍ୟ କୌଣସି ବ୍ୟକ୍ତି ବା ବସ୍ତୁ ଆମପାଇଁ ଅପରିହାର୍ଯ୍ୟ ନୁହେଁ । ପୁଣି ଆମର ସାଧାରଣ ବୁଦ୍ଧି ପ୍ରୟୋଗ କଲେ, ଆମେ ଜାଣିପାରିବା ଯେ, 'ଏ ଇଂରେଜଙ୍କ ବିନା ଆମ କାମ ବର୍ତ୍ତମାନ ଚଳିବ ନାହିଁ', କହିବାଟା ଇଂରେଜମାନଙ୍କ ମନରେ ଅହଙ୍କାର ଆଣି ଦେବ ।

ଇଂରେଜମାନେ ପୁଡ଼ା-ପୁଟୁଳା ବାନ୍ଧି ବିଦା ହୋଇଗଲେ ଭାରତବର୍ଷ ଅନାଥ ହୋଇଯିବ ବୋଲି ଭାବିବା ଠିକ୍ ନୁହେଁ । ଇଂରେଜମାନଙ୍କର ଭୟରେ ଯେଉଁମାନେ ବାଧ୍ୟ ହୋଇ ଶାନ୍ତ ରହିଛନ୍ତି, ଇଂରେଜମାନେ ଭାରତ ଛାଡ଼ି ଚାଲିଗଲେ, ସେମାନେ ଗଣ୍ଡଗୋଳ କରିବାର ସମ୍ଭାବନା ଅଛି । ବରଂ ଏହାକୁ ଦବେଇ

ହେଲେ କୌଣସି ଲାଭ ହୁଏ ନାହିଁ । ବରଂ ପାଚ ଫାଟି ମୁହଁ ଧୋଇଯିବା ଭଲ । ସେଥିପାଇଁ ଯଦି ଆମେ ଆପଣା ମଧ୍ୟରେ ଶାନ୍ତିରେ ରହି ନ ପାରୁ, ତେବେ ଆମ ଭିତରେ ଲଢ଼ାଲଢ଼ି ହେବା ଭଲ । ସେଥିପାଇଁ ଦୁର୍ବଳକୁ ରକ୍ଷା କରିବା ବାହାନାରେ କୌଣସି ତୃତୀୟ ପକ୍ଷ ମଝିରେ ପଶିବା କିଛି ଦରକାର ନାହିଁ । ଆମ୍ଭ-ମାନଙ୍କର ଏହି ତଥାକଥିତ ସୁରକ୍ଷା ଆମର ସତ୍ୟାନାଶ କରିଛି । ଦୁର୍ବଳକୁ ଏପରି ରକ୍ଷା କରିବା ଦ୍ୱାରା ତାକୁ ଆହୁରି ଦୁର୍ବଳ କରି ଦିଆଯାଏ । ମଡ୍‌ରେଟ ବା ନରମପନ୍ଥୀଙ୍କର ଏ ବିଷୟରେ ଉତ୍ତମ-ରୂପେ ଚିନ୍ତା କରିବା ଉଚିତ । ଆମେ ଏହା ଉପଲବ୍ଧି ନ କଲେ, ଆମେ ସ୍ୱରାଜ୍ୟ ପାଇ ପାରିବୁଁ ନାହିଁ । ମୁଁ ଜଣେ ଇଂରେଜ ପାଦ୍ରୀଙ୍କ ଉକ୍ତିକୁ ସେମାନଙ୍କର ମନେ ପକେଇ ଦେବି । ସେ କହିଥିଲେ 'ବ୍ୟବସ୍ଥିତ ବିଦେଶୀ ଶାସନଠାରୁ ସ୍ୱରାଜ୍ୟରେ ଅରାଜ-କତା ଭଲ ।' ଅବଶ୍ୟ ମୋ ବିଚାର ଅନୁସାରେ ସ୍ୱରାଜ୍ୟର ଓ ସେହି ବିଜ୍ଞ ପାଦ୍ରୀଙ୍କ ସ୍ୱରାଜ୍ୟର ଅର୍ଥ ଅଲଗା । ଆମେ ଯେ ବିଦେଶୀ ବା ଦେଶୀ କାହାରି ଅତ୍ୟାଚାର ବା ପୀଡ଼ନ ସହିବୁଁ ନାହିଁ, ଏହା ଆମକୁ ଶିଖିବାକୁ ହେବ ଏବଂ ଅନ୍ୟମାନଙ୍କୁ ମଧ୍ୟ ଶିଖାଇବାକୁ ହେବ ।"

ଏ ବିଚାର ଗୃହୀତ ହେଲେ ଚରମପନ୍ଥୀ ଓ ନରମପନ୍ଥୀ ଉଭୟ ଦଳ ଏକାଠି ମିଶି ଯିବେ ଏବଂ ଦୁହିଁଙ୍କର ମିଶିଯିବା ଉଚିତ ମଧ୍ୟ । ଏ ଦୁଇ ଦଳ ମଧ୍ୟରେ ଭୟ ବା ଅବିଶ୍ୱାସ ରହିବାର କୌଣସି କାରଣ ନାହିଁ ।

ପାଠକ—ଏ ଦୁଇ ଦଳଙ୍କୁ ତ ଆପଣ ଏ କଥା କହିବେ । କିନ୍ତୁ ଇଂରେଜମାନଙ୍କୁ କଅଣ କହିବେ ?

ସମ୍ପାଦକ—ସେମାନଙ୍କୁ ମୁଁ ନମ୍ରଭାବରେ କହିବ, "ଆପଣ ଯେ ଆମର ଶାସକ, ସେ କଥା ମୁଁ ମାନୁଛି । ଆପଣ ଆପଣଙ୍କ ତରବାରିର ବଳରେ ଶାସକ ହୋଇଛନ୍ତି କିମ୍ବା ଆମେ ଚାହିଁବାରୁ ଶାସକ ହୋଇଛନ୍ତି, ସେ ବିଷୟରେ ବାଦବିବାଦ କରିବା କିଛି ଦରକାର ନାହିଁ । ଆପଣ ଆମ ଦେଶରେ ରହିବାରେ ମୋର କୌଣସି ଆପତ୍ତି ନାହିଁ । କିନ୍ତୁ ଶାସକ ହୋଇଥିଲେ ହେଁ, ଆପଣମାନଙ୍କୁ ଜନସାଧାରଣଙ୍କର ସେବକ ହୋଇ ରହିବାକୁ ପଡ଼ିବ । ଆମେ ଆପଣମାନଙ୍କ ଇଚ୍ଛାନୁସାରେ ଚଳିବୁଁ ନାହିଁ, ଆପଣମାନଙ୍କୁ ଆମର ଇଚ୍ଛାନୁସାରେ କାର୍ଯ୍ୟ କରିବାକୁ ହେବ । ଆପଣ ଏ ପର୍ଯ୍ୟନ୍ତ ଆମ ଦେଶରୁ ଯେଉଁ ଧନ ବୋହି ନେଇ ଯାଇଛନ୍ତି, ତାକୁ ପଛକେ ଆତ୍ମସାତ୍ କରନ୍ତୁ ମାତ୍ର ଏଣିକି ଆଉ ସେପରି ବୋହି ନେଇ ପାରିବେ ନାହିଁ । ଆପଣ ଇଚ୍ଛା କଲେ, ଭାରତବର୍ଷରେ ପୋଲିସ ( ଜଗୁଆଳି ) ରୂପେ ରହିପାରନ୍ତି । ମାତ୍ର ଆମ ସାଙ୍ଗରେ ବେପାର କରି ଆମଠାରୁ ଫାଇଦା ଉଠାଇ-ବାର ଲୋଭଟିକୁ ଆପଣମାନଙ୍କୁ ଛାଡ଼ିବାକୁ ହେବ । ଆପଣ ଯେଉଁ ସଂସ୍କୃତିର ସମର୍ଥକ, ଆମେ ତାକୁ ବିକୃତ ମଣୁଁ । ଆମ ସଂସ୍କୃତିକୁ ଆମେ ଆପଣଙ୍କ ସଂସ୍କୃତିଠାରୁ ଶ୍ରେଷ୍ଠ ମନେ କରୁଁ । ଆପଣମାନେ ଯଦି ଏ ସତ୍ୟ ଉପଲବ୍ଧି କରିବେ, ତେବେ ତଦ୍ୱାରା ଆପଣମାନଙ୍କର ମଙ୍ଗଳ ହେବ । ଯଦି ଆପଣ ଏହା ଗ୍ରହଣ କରି ନ ପାରିବେ, ତେବେ ଆପଣଙ୍କ ଦେଶର ପ୍ରବାଦ ଅନୁସାରେ ଆପଣମାନଙ୍କୁ ଆମ ଦେଶରେ ଭାରଣାପ୍ତ ହୋଇ ରହିବାକୁ ପଡ଼ିବ । ଆମ ଧର୍ମର ବାଧକ ହେଲାଭଳି କୌଣସି କାର୍ଯ୍ୟ ଆପଣମାନେ କରିବେ ନାହିଁ । ଦେଶର ଶାସକ ହିସାବରେ, ହିନ୍ଦୁମାନଙ୍କ ଧର୍ମ ଦୃଷ୍ଟିରୁ ଆପଣମାନଙ୍କର ଗୋମାଂସ ଖାଇବା ଛାଡ଼ିଦେବା ଏବଂ

ମୁସଲମାନମାନଙ୍କ ଧର୍ମ ଦୃଷ୍ଟିରୁ ଆପଣମାନଙ୍କର ଗୃହରେ ମାଂସ ଖାଇବା ଛାଡ଼ଦେବା କର୍ତ୍ତବ୍ୟ ହେବ । ଆମେ ଦବି କରି ରହିଥିଲୁଁ ବୋଲି ସିନା କିଛି କହୁ ନ ଥିଲୁଁ । ତାହା ବୋଲି ଆପଣମାନେ ଭାବନ୍ତୁ ନାହିଁ ଯେ ଆପଣମାନଙ୍କର ଏହି ଆଚରଣରେ ଆମେ ଆଘାତ ପାଉନାହୁଁ । ଆମେ ସ୍ୱାର୍ଥ ଦୃଷ୍ଟିରୁ ବା କୌଣସି ଭୟରେ ଆଜଯାଏ ଏ କଥା କହୁ ନ ଥିଲୁଁ । ମାତ୍ର ବର୍ତ୍ତମାନ ଆପଣମାନଙ୍କୁ ଏ କଥା ସାହସ ସହକାରେ କହିବାଟା ଆମର କର୍ତ୍ତବ୍ୟ ହୋଇ ପଡ଼ିଲାଣି । ଆମ ମତରେ ଆପଣମାନଙ୍କର ପ୍ରତିଷ୍ଠିତ ସ୍କୁଲ, କଲେଜ, ଆଦି କିଛି କାମର ନୁହେଁ । ଏହା ପରିବର୍ତ୍ତେ ଆମର ସେହି ପୁରୁଣା ସ୍କୁଲ ଓ କଲେଜ ବରଂ ଦରକାର । ଭାରତବର୍ଷର ଭାଷା ହିନ୍ଦୀ, ଇଂରାଜୀ ନୁହେଁ । ଆପଣଙ୍କୁ ସେ ଭାଷା ଶିଖିବାକୁ ହେବ ଓ ଆମେ ଆମର ରାଷ୍ଟ୍ରୀୟ ଭାଷାରେ ଆପଣମାନଙ୍କ ସଙ୍ଗେ କଥାବାର୍ତ୍ତା କରିବୁଁ ।

"ଆପଣମାନେ ସୈନ୍ୟ ଓ ରେଲପଥ ପିଛା ଯେଉଁ ଅଜସ୍ର ଖର୍ଚ୍ଚ କରୁଛନ୍ତି, ତାହା ଆମେ ବରଦାସ୍ତ କରିପାରୁ ନାହୁଁ । ଆମେ ଏପ୍ରକାର ଖର୍ଚ୍ଚର ଆବଶ୍ୟକତା ଉପଲବ୍ଧି କରି ପାରୁ-ନାହୁଁ । ଆପଣମାନେ ରୁଷିଆକୁ ଭୟ କରି ପରନ୍ତୁ ମାତ୍ର ଆମେ ତାକୁ ଡରୁ ନାହୁଁ । ରୁଷିଆ ଯଦି ମାଡ଼ି ଆସିବ, ତେବେ ଆମେ ସେ କଥା ବୁଝିବୁଁ । ଆପଣମାନେ ଯଦି ଆମ ସାଙ୍ଗରେ ଥିବେ, ତେବେ ଆମେ ଉଭୟେ ମିଶି ତାହାର ସମ୍ମୁଖୀନ ହେବା । ଆମର ବିଲାତି ବା ବିଦେଶୀ ଲୁଗା ଲୋଡ଼ା ନାହିଁ । ଏଇ ଦେଶରେ ଯେଉଁ ଜିନିଷ ଉତ୍ପାଦିତ ହେଉଛି, ସେଥିରେ ଆମେ କାମ ଚଳେଇ ନେବୁଁ । ଆପଣମାନଙ୍କର ଗୋଟାଏ ଆଖି ମ୍ୟାଂଚେଷ୍ଟର ଉପରେ ଓ ଆଉ ଗୋଟାଏ ଆଖି ଭାରତବର୍ଷ ଉପରେ ଲକ୍ଷ୍ୟ

ରହିବା ଆଉ ଘଟିବ ନାହିଁ । ଯଦି ଆପଣମାନଙ୍କ ସ୍ୱାର୍ଥ ଓ ଆମ ସ୍ୱାର୍ଥ ଏକା ହୋଇଯିବ, ତେବେ ଆମେ ଏକା ସାଙ୍ଗରେ କାମ କରି ପାରିବୁଁ ।

"ଆମେ ଆପଣମାନଙ୍କୁ ଅସମ୍ମାନ କରି ଏ କଥା କହୁ ନାହୁଁ । ଆପଣମାନଙ୍କ ହାତରେ ଅସ୍ତ୍ରବଳ ଓ ବିରାଟ ନୌ-ସେନା ରହିଛି । ଆପଣମାନଙ୍କର ଏ ସୈନ୍ୟ-ଶକ୍ତି ସହିତ ସୈନ୍ୟ-ବଳରେ ଆମେ ଲଢ଼ି ପାରିବୁଁ ନାହିଁ । କିନ୍ତୁ ଆପଣମାନେ ଯଦି ଉପର୍ଯ୍ୟୁକ୍ତ କଥାକୁ ଅନୁମୋଦନ ନ କରିବେ, ତେବେ ଆପଣମାନଙ୍କ ସହିତ ଆମର ମତ ମିଳିବ ନାହିଁ । ଆମେ ପ୍ରଜା ହିସାବରେ ଆପଣମାନଙ୍କ ଶାସନ ମାନିବୁଁ ନାହିଁ । ଆପଣ ଇଚ୍ଛା କଲେ, ଆମକୁ ଖଣ୍ଡ ଖଣ୍ଡ କରି କାଟି ପକେଇ ପାରନ୍ତି କିମ୍ବା ତୋପ ମୁହଁରେ ଉଡ଼େଇ ଦେଇ ପାରନ୍ତି । ଆମେ ଯାହା କହୁଛୁଁ, ଆପଣମାନେ ଯଦି ତଦନୁସାରେ କାମ ନ କରିବେ, ତେବେ ଆମେ ଆପଣମାନଙ୍କୁ ଆଦୌ ସାହାଯ୍ୟ କରିବୁଁ ନାହିଁ ଏବଂ ଆମେ ଜାଣିଛୁ ଯେ ଆମେ ସାହାଯ୍ୟ ନ କଲେ, ଆପଣମାନେ ପାଦେ ସୁଦ୍ଧା ଚାଲି ପାରିବେ ନାହିଁ ।

"କ୍ଷମତା-ମଦରେ ମତ୍ତ ହୋଇ ଆମର ଏ କଥାକୁ ଆପଣମାନେ ହସରେ ଉଡ଼େଇ ଦେଇ ପାରନ୍ତି । ଆପଣମାନଙ୍କର ଏ ହସଟା ଯେ ଭ୍ରାନ୍ତ ଓ ଅର୍ଥହୀନ, ଏ କଥା ଆଜି ହୁଏତ ଆମେ ଆପଣମାନଙ୍କୁ ଦେଖାଇ ଦେଇ ପାରିବୁଁ ନାହିଁ । କିନ୍ତୁ ଯଦି ଆମ ମଧ୍ୟରେ ପରିବର୍ତ୍ତନ ଥିବ, ତେବେ ଆପଣମାନେ ଦିନେ ଦେଖିବେ ଯେ ଆପଣମାନଙ୍କର ଏ ଅହଂକାରର କୌଣସି ଅର୍ଥ ନାହିଁ ଏବଂ ଆପଣମାନଙ୍କ ହସଟା ବିନାଶ କାଳେ ବିପରୀତ ବୁଦ୍ଧିର ଲକ୍ଷଣ । ଆପଣମାନେ ସ୍ୱଭାବତଃ ଧାର୍ମିକ ଜାତି ବୋଲି ଆମେ ବିଶ୍ୱାସ କରୁଁ । ଯେଉଁ ଦେଶରେ ନାନା ଧର୍ମର ଉଦ୍‌ଭବ ହୋଇଛି, ସେହି

ଦେଶରେ ଆମେ ବାସ କରୁଛୁଁ । ଆପଣମାନେ ଓ ଆମେ କେମିତି ଏକାଠି ହେଲୁଁ, ସେ କଥା ବିଚାର କରିବା ଦରକାର ନାହିଁ । ମାତ୍ର ଆମ ଉଭୟଙ୍କର ସମ୍ପର୍କକୁ ପରସ୍ପର ମଙ୍ଗଳ ପାଇଁ ଆମେ ବିନିଯୋଗ କରିପାରୁଁ ।

"ଭାରତବର୍ଷକୁ ଆପଣମାନେ, ଅର୍ଥାତ୍ ଯେଉଁ ଇଂରେଜମାନେ ଆସିଛନ୍ତି, ସେମାନେ ଇଂରେଜ ଜାତିର ଉତ୍ତମ ନମୁନା ନୁହନ୍ତି । ଆମେ ମଧ୍ୟ ଯେଉଁମାନେ ଅଧାଅଧି ଇଂରେଜ ପାଲଟି ଯାଇଛୁଁ, ଭାରତୀୟଙ୍କର ପ୍ରକୃତ ନମୁନା ନୋହୁଁ । ଆପଣମାନେ ଏଠାରେ ଯେଉଁ କାର୍ଯ୍ୟ କରିଛନ୍ତି, ଇଂରେଜ ଜାତି ଯଦି ତାହା ଜାଣିବେ, ତେବେ ସେମାନେ ଆପଣମାନଙ୍କ କାର୍ଯ୍ୟର ବିରୋଧ କରିବେ । ଆପଣମାନଙ୍କ ସହିତ ଭାରତର ସାଧାରଣ ପ୍ରଜାର ବହୁତ କମ୍ ସମ୍ପର୍କ ରହିଛି । ଆପଣମାନେ ଯଦି ଆପଣମାନଙ୍କର ତଥାକଥିତ ସଂସ୍କୃତିକୁ ଛାଡ଼ି ଦେଇ ନିଜ ଧର୍ମକୁ ଅଧ୍ୟୟନ କରିବେ, ତେବେ ଆମ ଦାବୀ ଯେ ଠିକ୍, ସେ କଥା ବୁଝି ପାରିବେ । ଯଦି ଆପଣମାନେ ଆମ ଦାବୀକୁ ସମ୍ପୂର୍ଣ୍ଣ ରୂପେ ପୂରଣ କରିବେ, ତେବେ ଆପଣମାନେ ଭାରତବର୍ଷରେ ରହି ପାରିବେ । ଏହି ସର୍ତ୍ତରେ ଯଦି ଆପଣମାନେ ଏଠାରେ ରହିବେ, ତେବେ ଆପଣମାନଙ୍କଠାରୁ ଅଳ୍ପ କିଛି ଶିକ୍ଷଣୀୟ କଥା ଆମେ ଶିଖିବୁଁ ଏବଂ ଆମଠାରୁ ଆପଣମାନଙ୍କୁ ବହୁତ କଥା ଶିଖିବାକୁ ପଡ଼ିବ । ଏହିରୂପେ ଆମେ ପରସ୍ପରର ଓ ପୃଥିବୀର ମଙ୍ଗଳ କରିବୁଁ । ମାତ୍ର ଏହା ସେତିକବେଳେ ସମ୍ଭବ ହେବ, ଯେତେବେଳେ ଆମ ସମ୍ପର୍କ ଧର୍ମ ଉପରେ ପ୍ରତିଷ୍ଠିତ ହେବ ।"

ପାଠକ—ଆପଣ ଏ ରାଷ୍ଟ୍ରର ପ୍ରଜାଙ୍କୁ କଅଣ କହିବେ ?

ସଂପାଦକ—ଏ ରାଷ୍ଟ୍ରର ପ୍ରଜା କିଏ ?

ପାଠକ—ବର୍ତ୍ତମାନ ଆପଣ ଓ ମୁଁ ଯେଉଁ ଅର୍ଥରେ ଏ ଶବ୍ଦ ବ୍ୟବହାର କରୁଛୁଁ, ସେହି ଅର୍ଥରେ ପ୍ରଜା, ଅର୍ଥାତ୍ ଯେଉଁମାନଙ୍କ ଉପରେ ୟୁରୋପୀୟ ସଭ୍ୟତାର ପ୍ରଭାବ ପଡ଼ିଛି ଏବଂ ଯେଉଁମାନେ ସ୍ୱରାଜ୍ୟ ପାଇବାକୁ ଉତ୍ସୁକ ଅଛନ୍ତି ।

ସମ୍ପାଦକ—ସେହି ପ୍ରଜାଙ୍କୁ ମୁଁ କହିବି, "ଯେଉଁ ଭାରତୀୟମାନଙ୍କୁ ପ୍ରକୃତ ସ୍ୱରାଜ୍ୟ-ନିଶା ଲାଗିଛି, କେବଳ ସେମାନେ ହିଁ ଇଂରେଜମାନଙ୍କୁ ଉପର୍ଯ୍ୟୁକ୍ତ ସ୍ପଷ୍ଟ ଢଙ୍ଗରେ କହି ପାରିବେ ଏବଂ ସେମାନେ ଇଂରେଜମାନଙ୍କର ଧମକରେ ଦବିବେ ନାହିଁ । ପୁଣି କେବଳ ସେହିମାନଙ୍କୁ ପ୍ରକୃତ ସ୍ୱରାଜ୍ୟ-ନିଶା ଲାଗିଛି ବୋଲି କୁହାଯିବ, ଯେଉଁମାନେ ବୁଦ୍ଧି ଶୁଦ୍ଧି ଜ୍ଞାନପୂର୍ବକ ବିଶ୍ୱାସ କରୁଥିବେ ଯେ ଭାରତୀୟ ସଭ୍ୟତା ହିଁ ଶ୍ରେଷ୍ଠ ସଭ୍ୟତା ଏବଂ ୟୁରୋପୀୟ ସଭ୍ୟତା କେବଳ ଅଢ଼େଇ ଦିନିଆ ସୁଆଙ୍ଗ ! ଏ ପ୍ରକାରର କେତେ କ୍ଷଣସ୍ଥାୟୀ ସଭ୍ୟତା ଜନ୍ମ ଲାଭ କରି ମାଟିରେ ମିଶି ଯାଇଛି ଏବଂ ଭବିଷ୍ୟତରେ ମଧ୍ୟ ଏପରି ସଭ୍ୟତା ସୃଷ୍ଟି ହୋଇ ମାଟିରେ ମିଶିଯିବ । ପ୍ରକୃତ ସ୍ୱରାଜ୍ୟ ନିଶା ସେହିମାନଙ୍କୁ ଲାଗିବ, ଯେ ଆତ୍ମବଳ ଅନୁଭବ କରୁଥିବେ ଏବଂ ପଶୁବଳ ଆଗରେ ଦବିଯିବେ ନାହିଁ ଓ ପଶୁବଳ ପ୍ରୟୋଗ କରିବାକୁ ସ୍ୱପ୍ନରେ ସୁଦ୍ଧା ଭାବିବେ ନାହିଁ । ଆଜିର ଦୟନୀୟ ଅବସ୍ଥା ଦେଖି ଯେଉଁମାନେ ଘୋର ଅସନ୍ତୁଷ୍ଟ ହୋଇ ରହିଛନ୍ତି ଏବଂ ଏହି ଅସନ୍ତୋଷରୂପକ ବିଷ ଯେଉଁମାନଙ୍କୁ ଖାଉଛି, ସେହି ଭାରତୀୟମାନଙ୍କୁ ପ୍ରକୃତ ସ୍ୱରାଜ୍ୟ-ନିଶା ଲାଗିଛି ବୋଲି ମନେ କରାଯିବ ।

"ଯଦି ଭାରତବର୍ଷରେ ଜଣେ ସୁଦ୍ଧା ଏ ପ୍ରକାରର ଭାରତୀୟ ଥିବେ, ତେବେ ସେ ଏକାକୀ ଇଂରେଜମାନଙ୍କୁ ଏହି କଥା ଗୁଡ଼ିକ କହିବେ ଓ ଇଂରେଜମାନେ ତାଙ୍କ କଥା ଶୁଣିବାକୁ ବାଧ୍ୟ ହେବେ ।

"ଉପରେ ଯାହା କୁହାଗଲା, ସେଗୁଡ଼ିକ ଆମର ଦାବୀ ନୁହେଁ, ତାହା କେବଳ ଆମର ମନର ଅବସ୍ଥା ସୂଚାଉଛି । ଆମେ ଖାଲି ମାଗିଲେ କିଛି ପାଇପାରିବୁ ନାହିଁ । ଆମେ ଯାହା ଚାହୁଁଛୁ, ତାକୁ ଆମର କରାମତି ଦ୍ୱାରା ଅର୍ଜନ କରିବାକୁ ହେବ ଏବଂ ଏହା ଅର୍ଜନ କରିବାପାଇଁ ଆମର ଶକ୍ତି ଥିବା ଦରକାର । ଏ ଶକ୍ତି ତାଙ୍କୁ ହିଁ ମିଳିବ ଯେ :

୧ । ଯେଉଁଠି ବ୍ୟବହାର ନ କଲେ ନ ଚଳେ, କେବଳ ସେଇଠି ଇଂରାଜୀ ଭାଷା ବ୍ୟବହାର କରିବେ ;

୨ । ଉକିଲ ହୋଇଥିଲେ, ଓକିଲାତି ଛାଡ଼ିଦେବେ ଓ ଘରେ ଅରଟରେ ସୂତା କାଟିବେ ଓ ଲୁଗା ବୁଣିବେ ;

୩ । ଉକିଲ ହୋଇଥିଲେ, ଲୋକମାନଙ୍କୁ ଓ ଇଂରେଜମାନଙ୍କୁ ବୁଝାଇବାରେ ଓ ଲୋକଙ୍କ ଆଖି ଫିଟାଇବାରେ ନିଜ ଜ୍ଞାନବୁଦ୍ଧି ଖଟାଇବେ ;

୪ । ଉକିଲ ହୋଇଥିଲେ ହେଁ, ବାଦୀ-ପ୍ରତିବାଦୀ ( ମୁଦେଇ ଓ ମୁଦାଲା )ଙ୍କ କଳିରେ ପଶିବେ ନାହିଁ, କୋର୍ଟ କଚେରି ଛାଡ଼ିଦେବେ ଓ ନିଜ ଅଭିଜ୍ଞତାରୁ ଲୋକଙ୍କୁ ତାହା ଛାଡ଼ିବାପାଇଁ ବୁଝାଇବେ ;

୫ । ଉକିଲ ହୋଇଥିଲେ, ଯେପରି ନିଜ ଓକିଲାତି ଛାଡ଼ିଦେବେ, ସେହିପରି ଜଜ୍ କାମ କରିବାକୁ ମଧ୍ୟ ନାରାଜ ହେବେ ;

୬ । ଡାକ୍ତର ହୋଇଥିଲେ, ନିଜର ଡାକ୍ତରୀ ପେଶା ଛାଡ଼ି ଦେବେ ଓ ଲୋକଙ୍କ ଶରୀରକୁ ଆରୋଗ୍ୟ କରିବା ଅପେକ୍ଷା ସେମାନଙ୍କର ଆତ୍ମାକୁ ଉନ୍ନତ କରିବା ଶ୍ରେୟସ୍କର ବୋଲି ବୁଝି ପାରିବେ ;

୭ । ଡାକ୍ତର ହୋଇଥିଲେ, ବୁଝିଥିବେ ଯେ ସେ ଯେଉଁ ଧର୍ମାବଲମ୍ବୀ ହୋଇଥାନ୍ତୁ ପଛକେ, ବରଂ ଶରୀର ଛିଡ଼ଗଣ ରହିଥାଉ, ମାତ୍ର ଇତର ପ୍ରାଣୀମାନଙ୍କ ପ୍ରତି ଯେଉଁ ନିର୍ଦ୍ଦୟ ଆଚରଣ କରି ଔଷଧ ତିଆରି ହେଉଛି, ସେହି ଔଷଧ ଦ୍ୱାରା ଦେହକୁ ଆରୋଗ୍ୟ କରିବେ ନାହିଁ ।

୮ । ନିଜେ ଡାକ୍ତର ହୋଇଥିଲେ ହେଁ, ସୂତା କାଟିବେ ଓ ଲୁଗା ବୁଣିବେ ଏବଂ ରୋଗୀକୁ ରୋଗର ମୂଳ କାରଣ ବୁଝାଇ ତାହା ଦୂର କରିବାର ଉପାୟ ବତାଇ ଦେବେ ଏବଂ ରୋଗୀକୁ ଅନାବଶ୍ୟକ ଔଷଧ ଦେଇ ଇନ୍ଦ୍ରିୟ-ଗୃତିକର ଅନାବଶ୍ୟକ ଭୋଗ-ବିଳାସକୁ ପ୍ରଶ୍ରୟ ଦେବେ ନାହିଁ, ଔଷଧ ଗୁଡ଼ାକ ନ ଖାଇ ଯଦି ରୋଗୀ ଦୈବାତ୍ ମରିଯାଏ, ତେବେ ପୃଥିବୀ ଦୁଃଖୀ ହୋଇଯିବ ନାହିଁ ବୋଲି ସେ ଭାବୁଥିବେ ଏବଂ ପ୍ରକୃତରେ ରୋଗୀ ପ୍ରତି ଦୟା ଦେଖାଇଲେ ବୋଲି ନିଜେ ବୁଝିଥିବେ ;

୯ । ଧନବାନ୍ ହୋଇଥିଲେ ହେଁ, ଆପଣା ଧନକୁ ଖାତିର ନ କରି ଯାହା ଠିକ୍ ମନେ କରିବେ, ତାହା କରିବେ ଓ କାହାରିକୁ ଭୟ କରିବେ ନାହିଁ ।

୧୦ । ଧନବାନ୍ ହୋଇଥିଲେ, ନିଜର ସବୁ ସମ୍ପତ୍ତି ଅରଟ ଚଳେଇବାରେ ଖରଚ କରିବେ ଓ ନିଜେ ସ୍ୱଦେଶୀ ଦ୍ରବ୍ୟ ବ୍ୟବହାର କରିବା ସଙ୍ଗେ ସଙ୍ଗେ ଅନ୍ୟମାନଙ୍କୁ ମଧ୍ୟ ତାହା କରିବାପାଇଁ ପ୍ରବର୍ତ୍ତାଇବେ ;

୧୧ । ଅନ୍ୟ ପ୍ରତ୍ୟେକ ଭାରତୀୟଙ୍କ ପରି ଭାବିବେ ଯେ ବର୍ତ୍ତମାନ ଅନୁତାପ, ପ୍ରାୟଶ୍ଚିତ୍ତ ଓ ଶୋକ କରିବାର ବେଳ ଆସିଛି ;

୧୨ । ଅନ୍ୟାନ୍ୟ ଭାରତୀୟଙ୍କ ପରି ଉପଲବ୍ଧି କରିବେ ଯେ ଇଂରେଜମାନଙ୍କୁ ନିନ୍ଦା କରି କିଛି ଲାଭ ନାହିଁ, ଆମରି ଦୋଷରୁ ସେମାନେ ଭାରତକୁ ଆସିଛନ୍ତି, ଆମରି ଦୋଷରୁ ସେମାନେ ଏ ଦେଶରେ ଅଛନ୍ତି ଏବଂ ଆମରି ଦୋଷ ଦୂର ହେଲେ, ସେମାନେ ଏ ଦେଶରୁ ଚାଲିଯିବେ ବା ନିଜକୁ ବଦଳାଇ ଦେବେ ;

୧୩ । ପ୍ରତ୍ୟେକ ଭାରତୀୟଙ୍କ ପରି ମଧ୍ୟ ବୁଝିବେ ଯେ ଶୋକ କରିବା ସମୟରେ ବିଳାସ-ବ୍ୟସନରେ ମଜ୍ଜିବା ଅନୁଚିତ, ଏପରି ପତିତ ଅବସ୍ଥାରେ ଥିବାବେଳେ ବରଂ ଜେଲ୍ ବା ନିର୍ବାସନ ଦଣ୍ଡ ଭୋଗିବା ଶ୍ରେୟସ୍କର ଅଟେ ;

୧୪ । ଅନ୍ୟାନ୍ୟ ଭାରତୀୟଙ୍କ ପରି ଜାଣିଥିବେ ଯେ ଲୋକଙ୍କୁ ବୁଝାଇବା ବାହାନାରେ ଜେଲ୍ ନ ଯିବାପାଇଁ ସାବଧାନ ରହିବା ଭୁଲ ଧାରଣା ମାତ୍ର ;

୧୫ । ଅନ୍ୟମାନଙ୍କ ପରି ଯେ ବୁଝିଥିବେ ଯେ କଥାରେ କହିବା ଅପେକ୍ଷା କାର୍ଯ୍ୟରେ କରି ଦେଖାଇବା ଅଧିକ ଶ୍ରେୟସ୍କର, ତେଣୁ ଆମର ମନ କଥା ନିର୍ଭୟରେ କହିବା ଆମର କର୍ତ୍ତବ୍ୟ ଏବଂ ଏପରି କହିବା ଯୋଗୁଁ ଯାହା ଫଳଭୋଗ କରିବାକୁ ପଡ଼ିବ, ତାହା ସହିବୁଁ ଏବଂ ତାହାହେଲେ ଯାଇ ଆମ କଥାର ପ୍ରଭାବ ଅନ୍ୟ ଉପରେ ପକାଇ ପାରିବୁଁ ;

୧୬ । ଅନ୍ୟମାନଙ୍କ ପରି ବୁଝି ପାରିବେ ଯେ ଆମେ କେବଳ ଦୁଃଖ-କଷ୍ଟ ସହିଲେ ଯାଇ ପରାଧୀନତାର ବନ୍ଧନରୁ ମୁକ୍ତ ହୋଇ ପାରିବୁ ;

୧୭ । ଅନ୍ୟମାନଙ୍କ ପରି ଉପଲବ୍‌ଧି କରିବେ ଯେ ଇଂରେଜ-ମାନଙ୍କ ସଭ୍ୟତାକୁ ପ୍ରଶ୍ରୟ ଦେଇ ଆମେ ଯେଉଁ ପାପ କରିଛୁ, ତାହା ଦୂର କରିବାପାଇଁ ଆମକୁ ଯଦି ଆଜୀବନ ଆଣ୍ଡାମାନ ଦ୍ୱୀପରେ ନିର୍ବାସିତ ହୋଇ ରହିବାକୁ ପଡ଼ିବ, ତେବେ ସେ ଦଣ୍ଡ ଯଥେଷ୍ଟ ନୁହେଁ ;

୧୮ । ପ୍ରତ୍ୟେକ ଭାରତୀୟଙ୍କ ପରି ଜାଣିଥିବେ ଯେ କୌଣସି ରାଷ୍ଟ୍ର ଦୁଃଖ-କଷ୍ଟ ନ ସହି ଉନ୍ନତ କରିନାହିଁ, ହିଂସା-ଯୁଦ୍ଧରେ ମଧ୍ୟ ଦୁଃଖକଷ୍ଟ ସହିବାରେ ହିଁ ଯୋଦ୍ଧାର ଅସଲ ପରୀକ୍ଷା ହୋଇଥାଏ ଏବଂ ଅନ୍ୟର ପ୍ରାଣନେବା ସେଥିର ଅସଲ କଷୋଟି ନୁହେଁ ଏବଂ ସତ୍ୟାଗ୍ରହ ପ୍ରତି ଏହା ଅଧିକ ପ୍ରଯୁଜ୍ୟ ଅଟେ ।

୧୯ । ଅନ୍ୟମାନଙ୍କ ପରି ଉପଲବ୍‌ଧି କରିବେ ଯେ ଯେତେ-ବେଳେ ସମସ୍ତେ କରିବେ, ସେତେବେଳେ ଯାଇ ଆମେ ତାହା କରିବା ହେଉଛି ମୂଳରୁ ନ କରିବାର ଗୋଟାଏ ବାହାନା ମାତ୍ର; ଆମକୁ ଯାହା ଠିକ୍ ବୋଧ ହେଉଛି, ତାହା ଆମେ କରିପିବୁ, ଅନ୍ୟମାନଙ୍କୁ ଯେତେବେଳେ ତାହା ଠିକ୍ ବୋଧ ହେବ, ସେତେବେଳେ ସେମାନେ କରିବେ – ଏହା ହିଁ ହେଉଛି କାମ କରିବାର ପନ୍ଥା, ମୁଁ ଯେତେବେଳେ କୌଣସି ସ୍ୱାଦୁ ଖାଦ୍ୟପଦାର୍ଥ ଖାଇବାକୁ ଇଚ୍ଛା କରେ, ସେତେବେଳେ ଅନ୍ୟ ଲୋକ ତାହା ଖାଇବା ପର୍ଯ୍ୟନ୍ତ ମୁଁ ରହିଁ ରହେ ନାହିଁ, ରାଷ୍ଟ୍ରୀୟ ଦାବୀ ହାସଲ କରିବାକୁ ଉଦ୍ୟମ କରିବା ଓ ଦୁଃଖ କଷ୍ଟ ସହିବା, ସ୍ୱାଦୁ ଖାଦ୍ୟ ଉପଭୋଗ କରିବା ସଙ୍ଗେ ସମାନ ଏବଂ ନାଗର ହୋଇ ଦୁଃଖ କଷ୍ଟ ସହିବା ଆଦୌ ତ୍ୟାଗ ନୁହେଁ ।"

ପାଠକ - ଏଇଟା ତ ଗୋଟାଏ ଲମ୍ବା ତାଲିକା । ସମସ୍ତେ ଏଗୁଡ଼ାକ କେବେ କରିବେ ଓ ଏହା କେବେ ଶେଷ ହେବ ?

ସମ୍ପାଦକ—ଆପଣ ପୁଣି ଭୁଲ ବୁଝିଲେ । ଅନ୍ୟମାନେ କଅଣ କଲେ ବା ନ କଲେ, ସେଥିରେ ମୋର ଯାଏ ଆସେ ନାହିଁ ଏବଂ ଆପଣଙ୍କର ମଧ୍ୟ କାହାରିକୁ ଅପେକ୍ଷା କରିବା ଉଚିତ ନୁହେଁ । ପ୍ରତ୍ୟେକଙ୍କର ନିଜ ନିଜ କର୍ତ୍ତବ୍ୟ କରିଯିବା ଉଚିତ । 'ଆପଣ ଆପଣଙ୍କ କଥା ଭାବନ୍ତୁ ମୁଁ ମୋ କଥା ଭାବିବି' ବୋଲି ଯାହା କୁହାଯାଏ, ତାହା ନିଜ ନିଜର ସ୍ୱାର୍ଥ ସିଦ୍ଧି ପାଇଁ କୁହାଯାଏ । ପରମାର୍ଥ ପାଇଁ ମଧ୍ୟ ସେହି କଥାଟି ଖଟିବ । ମୁଁ ଯଦି ମୋ କର୍ତ୍ତବ୍ୟ କରିବି, ତେବେ ତଦ୍ଦ୍ୱାରା ନିଜର ଉପକାର କରିବି ଏବଂ ତାହା ହେତୁ ଯାଇଁ ଅନ୍ୟର ଉପକାର କରିବାକୁ ସମର୍ଥ ହେବି । 'ମୋ କର୍ତ୍ତବ୍ୟ ମୁଁ କରିଯିବି' ଏହି ଶବ୍ଦରେ କାର୍ଯ୍ୟ ସିଦ୍ଧିର ଚାବିକାଠି ରହିଛି ।

ଆପଣଙ୍କଠାରୁ ବିଦାୟ ନେବା ପୂର୍ବରୁ ମୁଁ ପୁଣି ଥରେ ମୋ କଥା ଦୋହରାଉଛି ।

୧ । ଆତ୍ମ-ନିୟନ୍ତ୍ରଣ ବା ଆତ୍ମ-ସଂଯମ ହିଁ ପ୍ରକୃତ ସ୍ୱରାଜ୍ୟ ।

୨ । ସତ୍ୟାଗ୍ରହ, ଅର୍ଥାତ୍ ଆତ୍ମବଳ ବା ପ୍ରେମବଳ ହିଁ ସ୍ୱରାଜ୍ୟ ପାଇବାର ଚାବିକାଠି ।

୩ । ସେହି ବଳ ପ୍ରୟୋଗ କରିବାପାଇଁ ସ୍ୱଦେଶୀକୁ ପୁରାପୂରି ଗ୍ରହଣ କରିବା ଆବଶ୍ୟକ ।

୪ । ଆମେ ଯାହା କରିବାକୁ ଚାହୁଁ, ତାହା କରିବା ଉଚିତ । ଇଂରେଜମାନଙ୍କ ପ୍ରତି ଆମ ମନରେ ଦ୍ୱେଷ ଅଛି ବୋଲି ବା ପ୍ରତିଶୋଧ ନେବା ଉଦ୍ଦେଶ୍ୟରେ ଆମେ ତାହା କରିବୁ, ଏପରି ନୁହେଁ । ତାହା କରିବା ଆମର କର୍ତ୍ତବ୍ୟ ବୋଲି

ଆମେ କରିବୁ । ଉଦାହରଣ ସ୍ୱରୂପ, ଇଂରେଜମାନେ ଯଦି ଲୁଣ ଟିକସ ରଦ୍ଦ କରିଦେବେ, ଯେଉଁ ଧନ-ସମ୍ପତ୍ତି ନେଇ ଯାଇଛନ୍ତି, ତାକୁ ଫେରାଇ ଦେବେ, ଭାରତୀୟମାନଙ୍କୁ ବଡ଼ ବଡ଼ ଚାକିରି ଦେବେ ଓ ଗୋରା ସୈନ୍ୟ ଏ ଦେଶରୁ ହଟାଇ ନେବେ, ତାହା ହେଲେ ସୁଦ୍ଧା ଆମେ ସେମାନଙ୍କର କଳକଣ୍ଟା ଜିନିଷ ବା ଇଂରାଜୀ ଭାଷା ବ୍ୟବହାର କରିବୁ ନାହିଁ କିମ୍ବା ସେମାନଙ୍କର ଶିଳ୍ପଜାତ ପଦାର୍ଥକୁ ଛୁଇଁବୁ ନାହିଁ । ଆମକୁ ବୁଝିବାକୁ ହେବ ଯେ ସ୍ୱାଭାବିକ ରୂପେ ସେଗୁଡ଼ାକ କ୍ଷତିକାରକ, ତେଣୁ ଆମେ ସେସବୁ ଚାହୁଁନା । ମୁଁ ଯାହା କହିଲି, ଇଂରେଜମାନଙ୍କ ପ୍ରତି ବିଦ୍ୱେଷବଶତଃ କହୁ ନାହିଁ; ମାତ୍ର ସେମାନଙ୍କର ସଭ୍ୟତା ପ୍ରତି ମୋର ବିଦ୍ୱେଷଭାବ ଥିବାରୁ ତାହା କହିଲି ।

ମୋର ଧାରଣା, ଆମେ 'ସ୍ୱରାଜ୍ୟ'ର ପ୍ରକୃତ ତାତ୍ପର୍ଯ୍ୟ ନ ବୁଝି ସେହି ଶବ୍ଦ ବ୍ୟବହାର କରୁଛୁ । ମୁଁ ଯେପରି ବୁଝିଛି, ଏଠାରେ ତାକୁ ସେହିପରି ବୁଝାଇବାକୁ ଚେଷ୍ଟା କରିଛି, ଏବଂ ମୋର ବିବେକ ସାକ୍ଷ୍ୟ ଦେଉଛି ଯେ ଏହି ସ୍ୱରାଜ୍ୟ ଅର୍ଜ୍ଜନ କରିବାପାଇଁ ମୋର ଜୀବନ ଆଗକୁ ଉତ୍ସୃଷ୍ଟ ହୋଇଛି ।

---

ସ ମା ପ୍ତ